# ପ୍ରୀତିବୀଣା

(ଆଧୁନିକ ଗୀତିକବିତା)

ଡକ୍ଟର କୃତ୍ତିବାସ ନାୟକ
(ଜାତୀୟ ପୁରସ୍କାର ପ୍ରାପ୍ତ ଲେଖକ)

ISBN-81-87968-39-7

ଅରୁଣ-ତରୁଣ
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧

ପ୍ରୀତିବୀଣା

ରଚନା :

ଡକ୍ଟର କୃତ୍ତିବାସ ନାୟକ

# PREETI VEENA

(Approve Lyrics of AIR)

Lyricist :

**Dr. Kruttibas Nayak**

National Award Winner Writter

**Publisher :**

*Arun Tarun*

Children's Literature Dev. Society

(Regd. No. K-2627. 66/96-97)

VIM-55, Sailashree Vihar,

Bhubaneswar-21

Mob.: 9937743508

**1st Edition - 2013**

**Price : Rs. 80/-**



# ତୁମସାଥେ ମୋର ଭାବଥିଲା

ତୁମସାଥେ ମୋର ଭାବଥିଲା ବୋଲି ହେଉଥିଲେ ଆମେ ନିନ୍ଦିତ,
ସିନ୍ଦୁର ଟିକିଏ ପାଇଗଲି ଯେବେ ହୋଇଗଲେ ଆଜି ବନ୍ଦିତ ।(ଘୋଷା)

ଯେଉଁ ପ୍ରେମପାଇଁ କହୁଥିଲେ ଲୋକେ-
କରିଦେଲି ମହାପାପ,
ସେହି ପ୍ରେମ ଆଜି ବସାଇ ଆସନେ-
ଦିଏ ଫୁଲ ଧୂପ ଦୀପ ।
ତୁମ ସାଥେ ମୋର ପ୍ରେମ କାହାଣୀଟି ହୋଇଥିଲା ଦିନେ ଚର୍ଚ୍ଚିତ ।(୧)

ଯେଉଁ ପ୍ରେମପାଇଁ ଅନୁତାପ କରି-
ଜଳି ମରୁଥିଲି ମୁହିଁ,
ସେହି ପ୍ରେମ ଆଜି ପ୍ରଣୟବେଦୀରେ-
ଗଲା ମହାପୁଣ୍ୟ ହୋଇ ।
ମୋ ହୃଦୟେ ଥିଲା ପ୍ରେମର ଅଙ୍କୁର-ହୋଇଗଲା ଆଜି ପୁଷ୍ପିତ ।(୨)

୦୦୦



# ତୁମେ ଦିନେ ଆସି

ତୁମେ ଦିନେ ଆସି କୁତୁକୁତୁ କରି ଉଠାଇଦେଲ ମୋ ସୁପ୍ତପ୍ରେମକୁ,
ସଭିଏଁ ଜାଣିଲେ ତୁମସାଥେ ମୋର ଲୁଚି ଚାଲିଥିବା ଗୁପ୍ତପ୍ରେମକୁ ।(ଘୋଷା)

ତୁମେ ଡରିଲନି ମୁଁ ଡରିଲିନି,
କେହି ତ ଆମକୁ ଧରି ପାରିଲେନି ।
ଆହୁରି ନିବିଡ଼ ଆହୁରି ଗଭୀର ଆହୁରି ତେଜିଲ ଦୀପ୍ତପ୍ରେମକୁ ।(୧)

ଆଖିରେ ଭରିଲ ଅନେକ ରୋଷଣି,
ସେ ରୋଷଣି ନିଆଁ କେବେ ବି ଲିଭେନି ।
କାଉଁରୀ ଛୁଆଁଇ ପ୍ରେମମନ୍ତ୍ର ପଢି ଜୀବନ୍ୟାସ ଦେଲ ଲୁପ୍ତପ୍ରେମକୁ ।(୨)

୦୦୦



# ତୁମରି ପ୍ରେମରେ ପଡ଼ିଥିଲି

ତୁମରି ପ୍ରେମରେ ପଡ଼ିଥିଲି ବୋଲି-
ଗାଉଥିଲି ମିଠାଗୀତ,
ଆଜି ମୋ କଣ୍ଠରେ ସୁର ଫିଟେନାହିଁ-
ଅଥୟ ହୁଏ ମୋ ଚିତ୍ତ ।(ଘୋଷା)

ଭଙ୍ଗା ମନନେଇ ଗାଇ ହୁଏନାହିଁ ତୁମର ସେ ପ୍ରେମଗୀତି,
ଅତୀତକୁ ଝୁରି ଥକିପଡ଼ିଛି ମୁଁ ଥରିଉଠେ ମୋର ଛାତି ।
ଆଜି ଲାଗେ ମୋତେ ତୁମରି ଗୀତରେ-
ପଡ଼ିନାହିଁ ଯତିପାତ ।(୧)

ସୁର ଲୟ ତାଳ ରହୁନି ଗୀତରେ ଆଳାପରେ ଶେଷହୁଏ,
ରାଗ ସଙ୍ଗୀତର ମଧୁର ମୂର୍ଚ୍ଛନା ହୃଦୟରେ ଚାପି ରହେ ।
ଗୀତର ମୁଖଡ଼ା ଦିପଦ ଅନ୍ତରା-
କରେନାହିଁ ଆହ୍ଲାଦିତ ।(୨)

୦୦୦



# ଆଖିରେ ଯାହାର କବିତାର

ଆଖିରେ ଯାହାର କବିତାର ମାଳ ଓଠରେ ଗୀତର ଝର,
ସେହି ମୋର ପ୍ରିୟା ମନର ମାନସୀ ମୁହିଁ ଏକା ପ୍ରିୟ ତା'ର ।(ଘୋଷା)

ଯିଏ ମୋ ହୃଦୟେ ଭରିଛି ପୁଲକ-
ଛୁଆଇଁ ଚଇତି ବାଆ,
ଛାତିରେ ମୋହର ଲେଖି ରଖିଛି ମୁଁ-
ତା' ରୂପ ଠିକଣା ନାଆଁ ।
ମୋ ପ୍ରିୟାର ମୁଖ ଦରଶନେ ସତେ ମନ ପୂରିଯାଏ ମୋର ।(୧)

ଭଲ ପାଇବାରେ ଏତେ ସୁଖଥାଏ-
ସେକଥା ନଥିଲା ଜଣା,
ପ୍ରେମ ପ୍ରୀତିକୁ ମୁଁ ପାପ ବୋଲି ଭାବି-
ହେଉଥିଲି ବାଟବଣା ।
ପ୍ରିୟା ବିନା ଏଇ ଜୀବନ ଲାଗଇ ଶୂନ୍ୟତାର ହାହାକାର ।(୨)

୦୦୦



# ମିଠା ଜହରକୁ ମୋତେ

ମିଠା ଜହରକୁ ମୋତେ ପେଇଦେଲ-
ପ୍ରେମ ପ୍ରୀତି ବୋଲି କହି,
ଭଲ ପାଇବାର ତୁମ ପ୍ରତିଦାନ-
ଏବେ ପାରୁନାହିଁ ସହି ।(ଘୋଷା)

ତୁମକୁ କେମିତି ମନର ମଣିଷ ନିଜେ ନିଜେ ନେଲି ବାଛି,
ଏମିତି କାହିଁକି କେବେଠୁ ହୋଇଲା ଜାଣିପାରୁ ନାହିଁ କିଛି ।
ଆଉ ମୁଁ ଖୋଜୁନି ସୁଖର ପସରା-
ତୁମରି ହୃଦୟେ ଥାଇ ।(୧)

ତୁମେ ଲେଖୁଥିଲ ମୁହିଁ ଗାଉଥିଲି ପ୍ରୀତିର ସଙ୍ଗୀତ ଯେତେ,
ସେହି ପ୍ରେମଗୀତ ଚହଲାଇ ଚିତ୍ତ ଶିହରିତ କଲା ମୋତେ
ଯୁଗ ଯୁଗ ପାଇଁ ତୁମସାଥୀ ହୋଇ-
ଜୀଇଁବି ତୁମରି ପାଇଁ ।(୨)

୦୦୦



# ଆଉ ଏବେ ତୁମ ଗୀତରେ

ଆଉ ଏବେ ତୁମ ଗୀତରେ ନାହିଁ ତ ସୁର କିବା ଲୟ ତାଳ,
ଆଉ ଏବେ ତୁମ ପ୍ରେମରେ ନାହିଁ ତ ପ୍ରୀତି ସଙ୍ଗେ ଭାବ ମେଳ ।(ଘୋଷା)

ଆଉ ଏବେ ତୁମକଥାରେ ନାହିଁ ତ ଆଗ ଭଳି ଏତେମିଠା,
ଆଉ ଏବେ ତୁମଚାଲିରେ ନାହିଁ ତ ଦୁଇଲମ୍ବା ବେଣୀଛଟା ।
ଆଖିରେ ନାହିଁ ତ ସେଦିନ ଚାହାଣି ଯେଉଁଥିରେ ମୋତେ ଜାଳ ।(୧)

ଆଉ ତୁମେ ଏବେ ହସି ଦେଉନାହଁ ମୋ ମୁହଁକୁ ଚାହିଁଦେଇ,
ଆଉ ଏବେ ତୁମେ ପଚାରି ବୁଝୁନା ଆଜି ଖାଇଛ କି ନାହିଁ ।
ରହିଛ କି ତୁମେ ନୂତନ ସନ୍ଧାନେ ଦେଖାଉଛ ମିଛ ଆଳ ?(୨)

୦୦୦



# ଭଲପାଏ ବୋଲି ସ୍ନେହଦେଲ

ଭଲପାଏ ବୋଲି ସ୍ନେହଦେଲ ଖାଲି-
ପ୍ରୀତିରେ ରହିଲା ମନ,
ସ୍ନେହ ରୁପାଜହ୍ନ ଶୀତଳ କିରଣ-
ସୁନାର ସୁରୁଯ ପ୍ରେମ ।(ଘୋଷା)

ତରଳ ସୁନାର ତୁମ ପ୍ରୀତିନଦୀ ବହିଯାଉ ଏଇବାଟେ,
ବୁଡ଼ଦେଇ ନିତି ମରି ବଞ୍ଚୁଥିବି ତୁମପ୍ରୀତି ନଦୀଘାଟେ ।
ଜହ୍ନ କିରଣରେ ମନ ବୁଝେନାହିଁ-
ଆଖିରେ ଆଖିଏ ସ୍ୱପ୍ନ ।(୧)

ଗୋପନ ମନର ଅନ୍ଧାର କୋଣରେ ଜଳିଛି ଯେଉଁ ଦୀପାଳି,
ସେହି ଦୀପାଳିର କ୍ଷୀଣ ଆଲୋକରେ ପ୍ରୀତିରଙ୍ଗ ଦିଅବୋଳି ।
ବୟସ ଡେଣାରେ ଉଡ଼ି ନ ଶିଖିଲେ-
ରହିଯିବି ଅସମ୍ପୂର୍ଣ୍ଣ ।(୨)

୦୦୦



# ଏମିତି ସମୟ ଆସିବ ଜୀବନେ

ଏମିତି ସମୟ ଆସିବ ଜୀବନେ ଭାବି ନଥିଲି ମୁଁ ମନେ,
କର୍ମକୁ ଆଦରି ଗୁମୁରି ଗୁମୁରି ଜଳିମରେ ମନେ ମନେ ।(ଘୋଷା)

ଜାତିଗଲା ମୋର ପେଟ ପୂରିଲାନି-
ଭାସିଗଲା ବାଲିଘର,
ପ୍ରୀତି ଗୁଡ଼ିଟିଏ ଉଡ଼େଇଥିଲି ମୁଁ-
ଛିଡ଼ିଗଲା ସୂତା ତାର ।
ଖିଆଲି ମନରେ ତୁମକୁ ଝୁରି ମୁଁ ଆକାଶର ତା'ରା ଗଣେ ।(୧)

ଭାଙ୍ଗି ଯାଇଛି ମୋ ସୁନେଲି ସପନ-
ହାରିଛି ତୁମରି ପାଶେ,
ଜୀବନ ବାଜିରେ ହାରିଗଲା ପରେ-
ସବୁ ଅନ୍ଧକାର ଦିଶେ ।
ତଥାପି କହିବି ଦିନଥିଲା ମୋତେ ଭଲ ପାଉଥିଲା ଜଣେ ।(୨)

୦୦୦



# ମୋ ହୃଦୟେ ତୁମେ ବସିଛ

ମୋ ହୃଦୟେ ତୁମେ ବସିଛ କି ନାହିଁ-
କରିବ ଯଦି ଦର୍ଶନ,
ମୋ ଛାତିକୁ ଚିରି ଦେଖି ପାରିବନି-
ଲଗାଅ ପ୍ରୀତି ଅଞ୍ଜନ ।(ଘୋଷା)

ତୁମନାମ ଘୋଷେ ମୋର ଓଠ ସଦା ନିଜେ ଆସି ଦେଖିନିଅ,
ତୁମ କଣ୍ଠ ସ୍ୱର ପ୍ରତିଧ୍ୱନି ଶୁଭେ କାନପାରି ଶୁଣିନିଅ ।
ମୋ ବୁକୁରେ ତୁମ ମଥାକୁ ଛୁଆଁଇ-
ମାପି ପାରିବ ସ୍ପନ୍ଦନ ।(୧)

ପ୍ରଣୟ କାତର ମୋର ତନୁ ମନ ଯାଇଛି ତୁମର ହୋଇ,
ନାହିଁ ମୋ ଶୋଚନା କାହାରି ତାଡ଼ନା ସ୍ୱଜାତି ସ୍ୱଧର୍ମ ପାଇଁ ।
ତୁମର ପରଶ ଦହନ ହୃଦୟେ-
ଲିପିବ ବାସ ଚନ୍ଦନ ।(୨)

୦୦୦



## ଅଳପ କଥାରେ ଅଳପ ମିଶାରେ

ଅଳପ କଥାରେ ଅଳପ ମିଶାରେ-
ତୁମେ ମୋତେ ଚୋରି କଲ,
ଅଳପ ଦିନରେ ଅଳପ ବ୍ୟଥାରେ-
ପରକରି ଚାଲିଗଲ ।(ଘୋଷା)

କଥା ଦେଇଥିଲ ମଥା ଯାଉପଛେ ରଖିବା ଆମରି ଟେକ,
ଭୁଲିବାନି ଆମେ କେହି କେବେହେଲେ କଟିଯାଉ ପଛେ ବେକ ।
ଆଜି ତୁମେ ମୋତେ ଅସହାୟ କରି-
କାହା ହାତ ଧରିନେଲ ।(୧)

ଭାବିଥିଲି ଦିନେ ତୁମେ ମୋର ଚାନ୍ଦ ମୁହିଁ ତୁମ ନୀଳକଇଁ,
ମଥାରେ ମୋହର ଲାଗିଛି କଳଙ୍କ କେବଳ ତୁମରି ପାଇଁ ।
ତୁମରି ସ୍ମୃତିକୁ ସାଉଁଟି ବଞ୍ଚିବି-
ଯେଉଁ ସ୍ନେହ ଦେଇଥିଲ ।(୨)

୦୦୦



## ଅଜାଣତେ ଯଦି ଲୁଚିଲୁଚି

ଅଜାଣତେ ଯଦି ଲୁଚିଲୁଚି ଆସି ଛୁଇଁଯାଏ ମୋତେ ଫଗୁଣ,
ମନକୁ ମୋହର ନଚାଏ ପବନ ମତୁଆଲା ହୋଇ ଦି'ଗୁଣ ।(ଘୋଷା)

ତୁମେ ଯେବେ ଆସି ମୋତେ ଛୁଇଁଦିଅ-
ମୋ ମନେ ଫୁଟଇ ଫୁଲ,
ତୁମେ ଚାଲିଗଲେ ମୋ ମଥାରେ ସତେ-
ଝରିପଡ଼େ ନିଆଁ ଝୁଲ ।
ତୁମେ କି ମନ୍ତର ଜାଣିଛ କି ସତେ କିଣିନେଲ ମୋ ଜୀବନ ।(୧)

ପ୍ରେମ ଲୁଚିଥିଲା ମନ ଅଗଣାରେ-
ଜହ୍ନ ଜ୍ୟୋଛନାର ମେଳେ,
ଏବେ ତୁମପାଶେ ଚୁପିଚୁପି ହସେ-
କେବେ ଲିଭି ପୁଣି ଜଳେ ।
କେବେ କହେନାହିଁ କେବେ ହାଇଁପାଇଁ  ସେଇ ପ୍ରେମ ଖୋଜେ ମିଳନ ।(୨)

୦୦୦



# ମଉନାବତୀ ପ୍ରିୟାର

ମଉନାବତୀ ପ୍ରିୟାର ଗାଆଁ ନାଆଁ ଅମରାବତୀ,
ସେଇ ଗାଆଁରେ ମୋ ପ୍ରିୟାଥିଲେ ହୁଏନା କେବେ ରାତି ।
(ଘୋଷା)

ସେଇ ଗାଆଁରେ ଫୁଲ ଫୁଟେନା ଉଏଁନା କେବେ ଜହ୍ନ,
ମଳୟ ସେଠି ବହେନା ପୁଣି ଶୁଭେନି କୁହୁତାନ ।
ମୋ ପ୍ରିୟା ସେହିଗାଆଁର ଫୁଲ-
ଲକ୍ଷେ ଜହ୍ନର ଜ୍ୟୋତି ।(୧)

ଧୂପ ଚନ୍ଦନ କି ହେବ ପୁଣି ମୋ ପ୍ରିୟା ଥିଲେ ପାଶେ,
ତା' ମିଠା ହସ ରଙ୍ଗରସରେ ଗାଆଁଟାଯାକ ବାସେ ।
ସେହି ଗାଆଁକୁ ଯିବି ଭାବିଲେ-
ଶିହରି ଉଠେ ଛାତି ।(୨)

୦୦୦



# ଜୀବନର ଏଇ ଶେଷ ଚିଠି

ଜୀବନର ଏଇ ଶେଷ ଚିଠି ମୋର ପଢିସାରି ଚିରିଦେବ,
ଉତ୍ତର ଦେବନି ମୋତେ ଖୋଜିବନି ଖୋଜିଲେ ନିରାଶ ହେବ ।(ଘୋଷା)

ପଢିବ ନାହିଁ ସେ ଅତୀତ କାହାଣୀ,
ପ୍ରୀତି ସଙ୍ଗୀତର ଖାତା ଖୋଲିବନି ।
ଭଲ ପାଇବାର ଯେତେ ସ୍ମୃତି ଅଛି ତାକୁ ସବୁ ଭୁଲିଯିବ ।(୧)

ଭାଙ୍ଗି ଯାଇଛି ମୋ ସୁଖର ସପନ,
ଝାଉଁଳି ପଡ଼ିଛି କୋମଳ ପରାଣ ।
ମୋର ପ୍ରେମପତ୍ର ପୋଡ଼ିଦେବ ସବୁ ଯଦି ତୁମପାଶେ ଥିବ ।(୨)

000



# ଏତେବଡ଼ ଦଣ୍ଡ ଦିଅନାହିଁ

ଏତେବଡ଼ ଦଣ୍ଡ ଦିଅନାହିଁ ମୋତେ ସହି ପାରିବିନି ଆଉ,
ଭୁଲିଯିବା କଥା କହିବନି କେବେ ତୁମକଥା ମନେଥାଉ ।(ଘୋଷା)

ତୁମେ ଚାଲିଯିବ ତୁମରି ବାଟରେ ଆଉ କାହାହାତ ଧରି,
ଥୁଣ୍ଟା ବରଗଛ ପରି ଏକା ମୁହିଁ ରହିବି ତୁମକୁ ଝୁରି ।
ଅଭୁଲା ସ୍ମୃତିକୁ ସଞ୍ଚି ଦେଖୁଥିବି ଦେଖାହେଉ ବା ନହେଉ ।(୨୧)

କୁହ ବା ନକୁହ ଆସ ବା ନଆସ ଦେଖ ବା ନଦେଖ ମୋତେ,
ଭୁଲି ପାରିବିନି ତୁମ ସ୍ନେହ ପ୍ରୀତି ପରଶି ଦେଇଛ ଯେତେ ।
ତୁମ ନାମମାଳା ଜପୁଥିବି ନିତି ଯିଏ ଯେତେ କଥା କହୁ ।(୨)

୦୦୦



# ବୟସ କେତେ ପଚାରେ ନାହିଁ

ବୟସ କେତେ ପଚାରେ ନାହିଁ ମହୁମାଛିକୁ ଫୁଲ,
ଭ୍ରମର କେବେ ପଚାରେ ନାହିଁ ଫୁଲର କେତେ ମୂଲ ।(ଘୋଷା)

ଜହ୍ନ ବି କେବେ ପଚାରେ ନାହିଁ କଇଁର କେତେ ବାସ,
ଫଗୁଣ ପୁଣି ଡାକି କହିନି ମଳୟ ଟିକେ ଆସ ।
ମେଘକୁ ଡାକେନାହିଁ ଆକାଶ କରିଦେବାକୁ ଗେଲ ।(୧)

ଆକାଶ କେବେ କହେନି ପାଣି ପାଖକୁ ମୋର ଆ-,
ମାଟି ବି କେବେ କହେନି ମେଘ ଟିକେ ବରଷି ଯା- ।
କିଏ କହିବ ଦୁହେଁ ଦୁହିଁକୁ ପାଇଲେ କିଆଁ ଭଲ(୨)

୦୦୦



# ପ୍ରେମରୁ ମୁଠାଏ ଦେଇଥିଲ

ପ୍ରେମରୁ ମୁଠାଏ ଦେଇଥିଲ ବୋଲି ପାପ ଆଞ୍ଜୁଳାଏ ନେଲି,
ଅନୁରାଗ ଟିକେଥିଲା ବୋଲି ସିନା ତୁମର ମୁଁ ହେଇଗଲି ।(ଘୋଷା)

ଫଗୁଣ କହିଲା ଫୁଲଥିଲା ଫୁଲ ଆସିଥିଲି ଛୁଇଁବାକୁ,
ଫୁଲକହେ ମୋର କାନରେ ଫଗୁଣ କହିଥିଲା ଫୁଟିବାକୁ ।
ଦୁହିଁଙ୍କର କଥା ମନକୁ ଛୁଏଁନା ମଳୟର ଦୋଷ ଦେଲ ।(୧)

ଜହ୍ନ ହସୁଥିଲା କିରିକିରି ହୋଇ ଆକାଶରୁ ମଧୁଢାଳି,
ସେ ମଧୁକୁ ପିଇ ମୋତେ ଢାଳିଦେଲ ନିଜ ହୃଦୟକୁ ଢାଳି ।
ଆଜି ତ ମାନୁଛି ବୟସ ନିଶାରେ ପାଗଳ ମୁଁ ହୋଇଥିଲି ।(୨)

୦୦୦



# ପୀରତିରେ ବନ୍ଧା

ପୀରତିରେ ବନ୍ଧା ଏ' ସାରା ସଂସାର ପୀରତିରେ ବନ୍ଧା ଆମେ,
ପୀରତି ଭାବରେ କି ମନ୍ତର ଅଛି କହି ପାରିବନି ତୁମେ । (ଘୋଷା)

ସାଗର ପୀରତି ନଦୀ ସଙ୍ଗେ ବନ୍ଧା ଝରଣା ପାହାଡ଼ ସାଥେ,
ଜହ୍ନ ପୀରତିର ମଧୁ ଢାଳି ତା'ର କଇଁପାଇଁ ରାତି ବିତେ ।
ପୀରତି ନିଶାରେ ପାଗଳ ଭଅଁର, ମହୁମାଛି ଫୁଲ ଚୁମେ ।(୧)

ପୀରତିର ପଥ ଯେମିତି ଖସଡ଼ା ସେମିତି କଣ୍ଟକ ଭରା,
ପାଦ ଚିପି ଯିଏ ଯାଏ ସେ ପଥରେ ସରଗ ତା' ପାଇଁ ଧରା ।
ସୁଖର ପସରା ଆନନ୍ଦ ଅସରା ପାଇ ପୀରତିରେ ଝୁମେ ।(୨)

୦୦୦



# ଲୋଡ଼େନା ମୁହିଁ ସୁନାର ହାର

ଲୋଡ଼େନା ମୁହିଁ ସୁନାର ହାର ଲୋଡ଼େନା ହୀରା ମୋତି,
ଲୋଡ଼ା ମୋହର ଶରଧା ଭରା ମୁଠାଏ ସ୍ନେହ ପ୍ରୀତି ।(ଘୋଷା)

ସେହି ପ୍ରୀତିର ଝରଣାହୋଇ ଯିବି ମୁଁ ଝରି ଝରି,
ଶିଉଳିଥିଲେ ଚାଲିବି ଧୀରେ ତୁମରି ହାତ ଧରି ।
ଆଖିରେ ଆଖି ମିଶିଲେ ଆମ ପାହିବ ମିଠାରାତି ।(୧)

ଆମକୁ ଦେଖି ହସିବ ଜହ୍ନ ଫୁଟିବ ତୋରାଫୁଲ,
ଫଗୁଣ ଆସି ଫୁଲକୁ ଛୁଇଁ କରିବ କେତେ ଗେଲ ।
ବିଜୁଳି ଆସି ଫଟାଇ ଦେବ ମେଘ ଆକାଶ ଛାତି ।(୨)

୦୦୦



# ପୁଣ୍ୟନଦୀର ପ୍ରୀତିଜଳେ

ପୁଣ୍ୟନଦୀର ପ୍ରୀତିଜଳେ ମୋତେ ତୁମେ ହିଁ ଭିଜେଇ ଥିଲ,
ମହୁଆ ନିଶାରେ ଶତ ଶିହରଣ ମୋ ମନେ ଜଗାଇ ଦେଲ ।(ଘୋଷା)

ଘୁମନ୍ତ ଆଖିରେ ତନ୍ଦ୍ରା ନଇଁଆସେ-
ତୁମଛବି ଭାସିଯାଏ,
ତୂଳିକା ନଥାଇ ମନପରଦାରେ-
ସେଇଛବି ଆଙ୍କିହୁଏ ।
ମଧୁ ଅଳସର ଆବାହନ ସୁରେ ତୁମେ ମୋ ହୃଦୟ ନେଲ ।(୧)

କୁସୁମ ଫୁଟିଲା ତୁମରି ଭାଷାରେ-
ମହକାଇ ଚଉଦିଗ,
ନବ ଅନୁଭବେ ଭରିଗଲା ମନେ-
କେତେ ରାଗ ଅନୁରାଗ ।
ଭରି ସୁରଭିରେ ଆଖି ଇସାରାରେ ତୁମେ ମୋ ପ୍ରଣୟୀ ହେଲ ।(୨)

୦୦୦



# ବାଟରେ ଘାଟରେ ଦେଖୁଥିଲି

ବାଟରେ ଘାଟରେ ଦେଖୁଥିଲି ସିନା-
ତୁମକୁ ମୁଁ ବେଳେବେଳେ,
ଏବେ ମୁଁ ଦେଖୁଛି ଶୟନେ ସପନେ-
ଦିନରାତି ସବୁବେଳେ ।(ଘୋଷା)

ଭାବୁଥିଲି ତୁମେ ସରଳ ଝିଅଟି-ଜାଣନା କପଟ ଛନ୍ଦ,
ପାଞ୍ଚପଦ ଶୁଣି କଥାକୁହ ପଦେ-ଉଦ୍ଦେଶ୍ୟ ନଥାଏ ମନ୍ଦ ।
ଜାଣି ପାରିଲିନି ଚୋରିକଲ ମୋର-
ମନଟାକୁ କେତେବେଳେ ।(୧)

ମନ ସଙ୍ଗେ ପୁଣି ନିଦ ଚୋରିକଲ-କେମିତି ବଞ୍ଚିବି ମୁହିଁ?
ଖାଲି ଦେହଟା ମୋ ଛଟପଟ ହୁଏ-ଆଉ ଗୋଟେ ମନପାଇଁ ।
ତୁମରି ମନକୁ ପାଇଲେ ରହିବି-
ଋଣୀହୋଇ କାଳେକାଳେ ।(୨)

୦୦୦



# ମୋ ମନ ନେବାକୁ ଲେଖିଛ

ମୋ ମନ ନେବାକୁ ଲେଖିଛ କବିତା ଗାଇଛ ପ୍ରଣୟ ଗୀତ,
କେତେ ପ୍ରତିଶ୍ରୁତି ସୁଖ ବୁଣିଦେଇ ଚୋରାଇ ନେଲ ମୋ ଚିତ୍ତ ।(ଘୋଷା)

ଦେଇନାହଁ କିଛି କେମିତି କହିବି ସ୍ନେହ ଯାଚିଦେଲ ଦିନେ,
ଲୁହ ତ ଦେଇଛ ହସ ବି ଦେଇଛ ପ୍ରୀତି ଭରିଦେଇ ମନେ ।
ମୋ ବୁକୁରେ ପୁଣି କୋହ ବି ଦେଇଛ ଆଙ୍କିଛ ଅଦେଖା କ୍ଷତ ।(୧)

ଆଶାର ଆଲୋକ ଦେଖାଇ ଭରିଛ ଆଖିରେ ଆଖିଏ ସ୍ୱପ୍ନ,
ଅକୁହା କାହାଣୀ କହିଛ ମୋ କାନେ ଦେଖାଇଛ ରୂପାଜହ୍ନ ।
ସନ୍ଦେହ କୁହୁଡ଼ି ଯାଇଛି ଦୂରେଇ ସ୍ୱପ୍ନ ହେଲା ଆଜି ସତ ।(୨)

୦୦୦



# ପାନ୍ଥଶାଳାର ପଥିକ ନୁହେଁ

ପାନ୍ଥଶାଳାର ପଥିକ ନୁହେଁ ମୁଁ ଅତିଥି ରାତିକ ପାଇଁ,
ରାତି ପାହିଗଲେ ଚାଲିଯିବି ନାହିଁ ମିଥ୍ୟା ପ୍ରତିଶ୍ରୁତି ଦେଇ ।(ଘୋଷା)

ମମତାର ମୂଲ ସଉଦା କରେନା ସ୍ନେହର କାଙ୍ଗାଳଟିଏ,
ପ୍ରୀତିଭରା ନଦୀ ପାରିହେବା ପାଇଁ ଖୋଜୁଛି ନାବିକଟିଏ ।
ଜାଣିଛି ନିଶ୍ଚୟ ପ୍ରୀତି ପରିଧିକୁ ଝଡ଼-ବଢି ଯିବଛୁଇଁ ।(୧)

ପ୍ରେମ ହୁଏ ସିନା ଜୀବନରେ ଥରେ ମିଶିଗଲେ ଦୁଇମନ,
ଛଳନା ସନ୍ଦେହ ନଥିଲେ ଜୀବନେ ପ୍ରେମରହେ ଚିରଦିନ ।
ଆମ ଦୁହିଁଙ୍କର ଭାବ ରହିଥିବ ଜନ୍ମ ଜନ୍ମାନ୍ତର ପାଇଁ ।(୨)

୦୦୦



# ମୋ ଜୀବନେ ତୁମେ ଆସିଛ

ମୋ ଜୀବନେ ତୁମେ ଆସିଛ ଗୋ ପ୍ରିୟା-
ସାଥେ ଫଗୁଣକୁ ଧରି,
ତୁମ ଆଗମନେ ମୋ ହୃଦୟ ବନେ-
ଅମୃତ ପଡୁଛି ଝରି ।(ଘୋଷା)

ତୁମରି ପରଶେ ମନପ୍ରାଣ ହସେ-ତନୁ ପୁଲକିତ ହୁଏ,
ତୁମରି ହସରେ ମଧୁର ଭାଷରେ-ପାଗଳ ମୁଁ ହୋଇଯାଏ ।
ଆଜି ତୁମର ଏ' ବଧୂବେଶ ଦେଖି-
ଲାଗେ ସରଗର ପରୀ ।(୧)

ଆଉ ଖୋଜିବିନି ସୁଖର ସହର-ମଧୁଝରା ଜହ୍ନରାତି,
ଲୋଡ଼ାନାହିଁ ଆଉ ଗୋଲାପର ଶେଜ-ଶୁଣିବାକୁ ପ୍ରେମଗୀତି ।
ତୁମେ ତ ସକଳ ସୁଖ ଅଜାଡ଼ିଛ-
ଆଉ ମୁଁ ହେବିନି ଝୁରି ।(୨)

୦୦୦



# ତୁମବିନା ମୋର ମନ

ତୁମବିନା ମୋର ମନଆକାଶରେ ଘୋଟିଥିଲା ମେଘକଳା,
ତୁମପାଇଁ ଆଜି ଜଳୁଛି ଦୀପାଳି ଦିଶୁଛି ଆଲୋକ ମାଳା ।(ଘୋଷା)

ତୁମପାଇଁ ସିନା ଝରୁଛି ଝରଣା-
ଫିଟିଛି ନଦୀର ଧାରା,
ତୁମବିନା ପୁଣି ଝଞ୍ଜା ବାଆବହେ-
ଜଳେ ନିଦାଘର ଖରା ।
ତୁମେଥିଲେ ପାଶେ ମନବଗିଚାରେ ବସିଯାଏ ଫୁଲମେଳା ।(୧)

ତୁମେ ଚାଲିଗଲେ ଫଗୁଣ ଆସେନି-
ବହେନି ମଳୟ ବାଆ,
ମେଘ ବରଷେନି ଜହ୍ନ ବି ଉଏଁନି-
ମନେ ଲାଗିଯାଏ ନିଆଁ ।
ସାତ ଜନମର ଶୋଷକୁ ମେଣ୍ଟାଏ ସେ ରୂପ ଅମୃତ ବୋଳା ।(୨)

୦୦୦



# କଣ୍ଟାର ଆଘାତ ସହିଛି

କଣ୍ଟାର ଆଘାତ ସହିଛି ଅନେକ ଭୁଲି ଯାଇଛି ଯାତନା,
ପ୍ରେମ ଆଘାତକୁ ଭୁଲିପାରେ ନାହିଁ ଅସହ୍ୟ ତା'ର ବେଦନା ।(ଘୋଷା)

ଦେହର ଦାଗଟା ଆଜି ନହେଲେ ବି କାଲି ପୁଣି ଲିଭିଯିବ,
ହୃଦୟରେ ଯେଉଁ ଦାଗଟା ଲାଗିଛି ତାକୁ କିଏ ଲିଭେଇବ ?
ଭଲ ପାଇବାର ଫଳ ଯା' ପାଇଛି-
କାହାକୁ କହି ହୁଏନା ।(୧)

ଦୁଃଖ ପାଇତିଲେ ସୁଖ ମିଳେନାହିଁ ସ୍ମୃତି ପାଇତିବି କିଆଁ ?
ପ୍ରୀତିପଣା ମୋର ଜହର ହୋଇଲା ଜାଣିଲା ନାହିଁ ଦୁନିଆ ।
ହାରି ଯାଇଛି ମୁଁ ପରାଜିତ ପ୍ରେମୀ-
ଜୀବନ ଲାଗେ ଅଲଣା ।(୨)

୦୦୦



## ସବୁକଥା ତ କହି ହୁଏନା

ସବୁକଥା ତ କହି ହୁଏନା ଝରେନା ସବୁ ଲୁହ,
ସବୁ ଦୁଃଖରେ କାନ୍ଦି ହୁଏନା ହୃଦୟେ ଥାଏ କୋହ ।(ଘୋଷା)

ସବୁ ହସରେ ନଥାଏ ମିଠା ସବୁ ନୁହଁନ୍ତି ପର,
ସବୁ ଜାଗାରେ ମନ ମାନେନା ଗଢି ହୁଏନା ଘର ।
ସବୁ ପ୍ରେମରେ ପ୍ରେମିକ ପାଇଁ-
ନଥାଏ ମାୟା ମୋହ ।(୧)

ସବୁ ସଞ୍ଜରେ ଉଇଁ ଆସେନା ପୁନେଇଁ ରୂପାଜହ୍ନ,
ସବୁ ରାଗରେ ଜଳେନି ନିଆଁ କିଛିଟା ଅଭିମାନ,
ସବୁ ଦିନରେ ତୁମେ ଯେମିତି-
ଆଜି ସେମିତି ନୁହଁ ।(୨)

୦୦୦



## ମୋର ପ୍ରାଣପ୍ରିୟା ଦେଇଦେଲା

ମୋର ପ୍ରାଣପ୍ରିୟା ଦେଇଦେଲା ମୋତେ-ଆଜି ପୂର୍ଣ୍ଣ ଅଧିକାର,
ସେହି ଅଧିକାର ଅକ୍ଷୁଣ୍ଣ ରହିବ-ଥିବାଯାଏ ପ୍ରାଣମୋର ।(ଘୋଷା)

କେତେ ତପବଳେ ପାଇଛି ପ୍ରିୟାର-
ଆଜି ଏ ମଧୁର ଚିଠି,
ତନୁ ମନ ସିନା ନାଚିଉଠେ ଆଜି-
ଫୁଲିଉଠେ ମୋର ଛାତି ।
କଥା ଦେଇଛି ସେ ହତାଶ ନକରି-ମୋ ହୃଦେ କରିବ ଘର ।(୧)

ଫୁଲ ଶେଜ ହେବ ମୋର କୋଳ ସିନା-
ସେ ହେବ ଅଙ୍କଶାୟିନୀ,
ସପନ ମୋହର ସତହେବ ଯଦି-
ରଚିବି ମଧୁଯାମିନୀ ।
କରିଛି ଭରସା ମୋ ଉପରେ ପ୍ରିୟା-ରହିଛି ବିଶ୍ୱାସ ତା'ର ।(୨)

୦୦୦



# ତୁମକୁ ବାଛିଲି ମୋ ଜୀବନ ସାଥୀ

ତୁମକୁ ବାଛିଲି ମୋ ଜୀବନ ସାଥୀ-ତୁମେ ମୋର ପ୍ରାଣପ୍ରିୟା,
ତୁମ ଚଲାପଥେ ଥିବି ଚିରଦିନ-କାୟା ପଛେ ହେବି ଛାୟା ।(ଘୋଷା)

ମରଣ ପଛକେ କରିବି ବରଣ-
ତୁମକୁ ଭୁଲିବି ନାହିଁ,
ଶପଥ ରହିଲା ମୋର ପ୍ରାଣପ୍ରିୟା
ପଛକୁ ଫେରିବି ନାହିଁ ।
ଆଜିଠୁ ତୁମର ମୋ ସହିତ ହେବ-ପ୍ରୀତିଭାବ ଦିଆନିଆ ।(୧)

ପ୍ରଥମ ଦେଖାରେ ମୋତେ ଚୋରିକଲ-
ଯାଚିଦେଇ ନିଜ ମନ,
ସେହି ମନ ସିନା ମୋ ଜୀବନ ପାଇଁ-
ରଙ୍କୁଣୀର ପ୍ରାଣଧନ ।
ଆମରି ପ୍ରେମରେ ନଥିବ ଟିକିଏ-ଅଭିନୟ ମିଛ ମାୟା ।(୨)

୦୦୦



# ଦେହଟାକୁ ସିନା ବିକି ଦେଇଥିଲେ

ଦେହଟାକୁ ସିନା ବିକି ଦେଇଥିଲେ ଆଣନ୍ତି ଫେରାଇ ଦିନେ,
ମନଟାକୁ ମୋର ଦେଇ ତ ସାରିଛି ଫେରିବ ନାହିଁ ସେ ଜାଣେ ।(ଘୋଷା)

ଯେତେ ଯାହା କୁହ ଯେତେ ରାଣଦିଅ ମନ ମୋର ମାନେନାହିଁ,
ମୋର ମନ ପ୍ରାଣ ହୃଦ ସିଂହାସନ ଯାଇଛି ତୁମର ହୋଇ ।
ଏ' ଜୀବନ ପଛେ ନର୍କେ ପଡ଼ିଯାଉ-
ଭଲପାଇ ମନେ ମନେ ।(୧)

ଥରେ ସିନା ଭଲ ପାଇଛି ତୁମକୁ କେମିତି ବଦଳି ଯିବି?
ତୁମରି ସ୍ମୃତିକୁ ସନ୍ତକ କରି ମୁଁ ଜଳି ଜଳି ମରୁଥିବି ।
ଭୁଲି ଯିବାପାଇଁ କୁହନାହିଁ ପ୍ରିୟା-
ମୋର ହୋଇରୁହ ତୁମେ ।(୨)

000



# ଯେଉଁଦିନ ତୁମେ ପ୍ରଥମେ ହସିଲ

ଯେଉଁଦିନ ତୁମେ ପ୍ରଥମେ ହସିଲ ମୋତେ ଦେଖି ଏକୁଟିଆ,
ସେହିଦିନଠାରୁ ତୁମେ ହେଲ ମୋର ଭାବ ହେଲା ଦିଆନିଆ ।(ଘୋଷା)

ଯେଉଁଦିନ ତୁମେ ପ୍ରଥମେ ରୁଷିଲ ଆଡ଼ ହୋଇ ଚାଲିଗଲ,
ସେହିଦିନ ତୁମେ ନିଜ ଅଧିକାର ମୋଠାରୁ ଛଡ଼େଇ ନେଲ ।
ଯେଉଁଦିନ ତୁମେ ପ୍ରଥମେ କାନ୍ଦିଲ-
ମୋ ମନେ ଲାଗିଲା ନିଆଁ ।(୧)

ଯେଉଁଦିନ ତୁମେ ମୋ ପାଖରେ ବସିଲ ହାତେ ମୋର ହାତ ଛନ୍ଦି,
ସେହିଦିନଠାରୁ ମୋ ହୃଦ କନ୍ଦରେ ହୋଇ ରହିଗଲ ବନ୍ଦୀ ।
ଯେଉଁଦିନ ତୁମେ ମିଛେ ନାହିଁ କଲ-
ମନହେଲା ଅମାନିଆ ।(୨)

୦୦୦



# ନକହି ନକହି କହିଦେଇଥିଲ

ନକହି ନକହି କହିଦେଇଥିଲ ସେଦିନ ମରମ କଥା,
ସେ ମରମ କଥା ହୃଦୟରେ ମୋର ଦେଇଛି ଚରମ ବ୍ୟଥା ।(ଘୋଷା)

ଭୁଲିଯିବା ପାଇଁ କହିଦେଲ ସିନା କେମିତି ଭୁଲିବି କୁହ,
ଭୁଲିବାର କଥା ଭାବିଲେ ମନରେ ଲହୁ ହୋଇଯାଏ ଲୁହ ।
ସ୍ମୃତିର ବୋଝକୁ କେଉଁଠି ଥୋଇବି ସେହି ଏକା ମୋର ଚିନ୍ତା ।(୧)

ହୃଦୟକୁ ତୁମେ ପାଷାଣ କରିଲ ଶୁଣାଇଲ ନୀତିବାଣୀ,
ମୋ ହୃଦୟବନ ପ୍ରୀତିଫୁଲଟିକୁ ଦଳିଦେଲ ଜାଣିଜାଣି ।
ମୋ ମନରେ ନିଆଁ ଲଗାଇଲ ସିନା-
ହେଲ କି ଜଗତ ଜିତା ?(୨)

୦୦୦



# ପ୍ରଥମ ଦିନର ନୂଆ ଅନୁଭୂତି

ପ୍ରଥମ ଦିନର ନୂଆ ଅନୁଭୂତି କେବେ ଭୁଲି ହୁଏନାହିଁ,
ଅନୁରାଗ ଭରା ତୁମ ପ୍ରୀତିଦାନ ରହିଗଲା ସ୍ମୃତିହୋଇ ।(ଘୋଷା)

ଚହଲା ଚହଲା ଆଖିରେ ତୁମର ଭରିଥିଲା କେତେକଥା,
ଥରିଲା ଥରିଲା ଓଠରେ ତୁମର ଲାଗି ରହିଥିଲା ମିଠା ।
ପ୍ରଣୟ ଆତୁରେ ହୋଇଲ ଅଧୀର ମୋତେ ଏକୁଟିଆ ପାଇ ।(୧)

ହୃଦୟ କାନନେ ସବୁଜ ଲତାରେ କଳି ହେଲେ କୁସୁମିତ,
ଜୀବନର ବୀଣା ଝଂକୃତ ହେଲା ଚହଲାଇ ମୋର ଚିତ୍ତ ।
ସେଦିନ ଜାଣିଲି ବିଧାତା ଗଢିଛି ତୁମକୁ ମୋହରି ପାଇଁ ।(୨)

୦୦୦



# ଯେତେ କହିଲେ ବି ମନ

ଯେତେ କହିଲେ ବି ମନ ବୁଝେନାହିଁ ତୁମକୁ ଭୁଲିବା ପାଇଁ,
ଭଲ ପାଇବାର ଯେତେ ଉପାଦାନ ସବୁ ତ ସାରିଛି ଦେଇ ।(ଘୋଷା)

ମନତଳେ ମୋର ଶତ ସପନର ଝରଣା ଯାଉଛି ବହି,
ସଜାଇ ରଖିଛି ହୃଦ ସିଂହାସନ କେବଳ ତୁମରି ପାଇଁ ।
ମୁକୁତାର ଫୁଲ ତୁମେ ମୋ ଜୀବନେ କାହାକୁ ମୁଁ ଦେବିନାହିଁ ।(୧)

ତୁମରି ନରମ ମିଠା ହସକଥା କେମିତି ଭୁଲିବି କୁହ,
ତୁମରି ପରଶେ ହୋଇଛି ମୁଁ ବଶ ପୁଲକିତ ହୁଏ ଦେହ ।
ତୁମ ବିନା ସତେ ବଞ୍ଚି ପାରିବିନି କହୁଛି ମୁଁ ରାଣ ଖାଇ ।(୨)

୦୦୦



# ମନର ମାନସୀ ମନସ୍ୱିନୀ

ମନର ମାନସୀ ମନସ୍ୱିନୀ ତୁମେ ମାନିନୀ ଗୋ ଅଭିମାନିନୀ,
ତୁମେ ଦେଖାଇଛ ଅନେକ ସପନ ତୁମେ ପ୍ରିୟା ଚନ୍ଦ୍ରବଦନୀ ।(ଘୋଷା)

ତୁମେ ମୋର ପାଇଁ ମୁହିଁ ତୁମପାଇଁ ଗଢିଛି ବିଧାତା ଆମକୁ,
ଅଜାଣତେ କିଏ ମୋଠାରୁ ଦୂରେଇ ନେଇ ପାରିବନି ତୁମକୁ ।
ତୁମରି ଆଶାରେ ତୁମରି ନିଶାରେ ବିତିଛି ଅନେକ ରଜନୀ ।(୧)

କଥାଦିଅ ତୁମେ ବଞ୍ଚିଥିବା ଆମେ ଦୁହେଁ ତ ଦୁହିଁଙ୍କ ପାଇଁ,
ଉଡ଼ିଯିବା ଆମେ ପ୍ରେମ ରାଇଜକୁ ପ୍ରୀତିର ସଙ୍ଗୀତ ଗାଇ ।
ଜନମେ ଜନମେ ହେବି ତୁମ ସାଥୀ ତୁମେ ହେବ ପ୍ରାଣ ସଙ୍ଗିନୀ ।(୨)
୦୦୦



# ଅଦିନେ ଫୁଟିଲା ମଲ୍ଲୀ

ଅଦିନେ ଫୁଟିଲା ମଲ୍ଲୀ ମନଗଲା ଚହଲି,
ତାର ରୂପ, ବାସ ଜାଣି ତାକୁ ଚାହିଁ ରହିଲି ।(ଘୋଷା)

ମଲ୍ଲୀ କହେ ନାଇଁ ନାଇଁ ମୋ ଦେହକୁ ଛୁଅଁନା,
ତାକୁ ଛୁଇଁଦେବା ପାଇଁ କଲି କେତେ ବାହାନା ।
ତୁହି ଫୁଟିଛୁ ମୋ ପାଇଁ ତା'ର କାନେ କହିଲି ।(୧)

ସଜଫୁଟା ମଲ୍ଲୀ ମୋତେ କଣେଇକି ଚାହିଁଲା,
ମୁରୁକି ହସରେ ମୋର ମନ ପ୍ରାଣ ଦହିଲା ।
ଶେଷରେ କହିଲା ମଲ୍ଲୀ ତୁମର ମୁଁ ହୋଇଲି ।(୨)

୦୦୦



## ଜୀବନର ବାଜି ହାରିଗଲି

ଜୀବନର ବାଜି ହାରିଗଲି ଆଜି
ହୃଦୟର କ୍ଷତ ଶୁଖିନାହିଁ,
ଜୀବନକୁ ନେଇ ଜୀଇଁଥିବି ମୁହିଁ
ସ୍ମୃତିକୁ ଆଗରେ ଥୋଇ ।(ଘୋଷା)

ଦୁନିଆ ଆଖିରେ ଅଭାଗିନୀ ହେଲି କଳଙ୍କିନୀ କଳାବୋଳି ହୋଇ,
ଆଶା ପାରିଜାତ ଯାଇଛି ମଉଳି ମନଫୁଲେ ଆଉ ବାସ ନାହିଁ ।
ଯେତେ ପୁଣ୍ୟ ମୋର ପାପ ହୋଇଗଲା
ରୂପ ଯଉବନ ହେଲା ଛାଇ ।(୧)

ଜୀବନ ନାଟକେ ସାଜିଛି ମୁଁ ଆଜି ବିଫଳ ନାୟିକା ଝରାଫୁଲ,
ତୁମରି ପାଷାଣ ହୃଦୟ ବୁଝେନା ପ୍ରେମ ପ୍ରୀତି ପ୍ରଣୟର ମୂଲ ।
ତୁମ ପ୍ରତାରଣା କାର୍ଯ୍ୟଘେନା ପ୍ରୀତି ମୋ ପାଇଁ ଜଳାଇ ଦେ଼ଲା ଜୁଇ ।(୨)

୦୦୦



# ତୁମ ଆଖି କହେ ପ୍ରେମ ପ୍ରୀତି କଥା

ତୁମ ଆଖି କହେ ପ୍ରେମ ପ୍ରୀତି କଥା ମୋତେ ଡାକେ ତୁମ ହସ,
ତୁମରି ଲାଜୁଆ ଧୀର ଚାଲି କହେ ମୋତେ ଧରିବାକୁ ଆସ ।(ଘୋଷା)

ନିଆରା ଆଖିର ନୀଳ ଆକାଶରେ ଉଡ଼ିଯାଏ ପ୍ରାଣପକ୍ଷୀ ,
ତୁମ ହୃଦୟକୁ ଛୁଇଁ ଆସିବାକୁ କେତେ ନୂଆ ଆଶା ରଖି ।
ମଉଳି ଫୁଲଟି ଫୁଟିଛ ଗୋ ତୁମେ-
ଚହଟାଇ ମଧୁବାସ ।(୧)

ମୋର ମନକଥା ତୁମେ ତ ଜାଣିଛ ମୁହିଁ ଜାଣେ ତୁମକଥା,
ମୋ ମନ ଖାତାରେ ସେହିକଥା ସବୁ ଯତନରେ ଅଛିଲେଖା ।
ମୋ ପାଇଁ ଫିଟିଛି ତୁମ ପ୍ରୀତି ଧାରା-
ଢାଳିଦିଅ ସୁଧାରସ ।(୨)

୦୦୦



# ସଜଫୁଟା ଫୁଲ

ସଜଫୁଟା ଫୁଲ ମନେ ଭରିଥିଲା ପୁଲକ,
ତା' ପାଖରେ ଘୁରୁଥିଲେ ପ୍ରଜାପତି ଅନେକ ।(ଘୋଷା)

ଫୁଲ ଟିକେ ହସିଦେଲା, ପାଖୁଡ଼ା ମେଲାଇ ଦେଲା ।
ବାସରେ ମହକି ଗଲା ବଗିଚାର ମୁଲକ ।(୧)

ମଧୁପ ଆସିଲେ ଉଡ଼ି, ବସିଲେ ଡେଣାକୁ ଝାଡ଼ି ।
ଗାଇଲେ ମଧୁର ଗୀତ ମନେଭରି ଚମକ ।(୨)

ହସୁଥିଲା ଫୁଲବନ, ନାଚୁଥିଲା ତନୁମନ ।
ମାଳି ଆସି ଦେଖିନେଲା ପଡ଼ିଲାନି ପଲକ ।(୩)

୦୦୦



# ମୋ ପ୍ରିୟା

ମୋ ପ୍ରିୟା ଦେଇଛି କଥା କାଲି ପୁଣି ଆସିବ,
ବାକିଥିବା କଥାକହି ମନମୋର ତୋଷିବ ।(ଘୋଷା)

ଆଜି ସିନା ଅବେଳାରେ ଦେଖା ହେଲା ଅଳପ,
ମନଭରି କଥା ହେବୁ ସରିବନି ଆଳାପ ।
ମୋ କଥାକୁ ଶୁଣି ସିଏ ମନ ଖୋଲି ହସିବ ।(୧)

ଗୋଲାପ ଫୁଲଟି ତୋଳି ଦେବି ଉପହାର,
ମଲ୍ଲୀମାଳଟିଏ ନେଇ ଦେବି ହାତେ ତା'ର ।
ଶରଧାରେ ପ୍ରିୟା ନେଇ ଗଭାରେ ତା' ଖୋଷିବ ।(୨)

୦୦୦



# ଗୋଲାପୀ ଲଫାପା ସବୁଜ ଚିଠି

ଗୋଲାପୀ ଲଫାପା ସବୁଜ ଚିଠିକୁ-
ପଠାଇଥିଲ ମୋ ଠିକଣାରେ,
ଏକାଥିଲି ଘରେ ମନ ହରଷରେ-
ପଢିନେଲି ବସି ଅଗଣାରେ ।(ଘୋଷା)

ମନ ଭରିଗଲା ଆକାଶେ ଉଡ଼ିଲା ,
ବାଦଲରେ ବସି ତୁମ ପାଶେ ଗଲା ।
ତୁମ ମନ ସଙ୍ଗେ ମୋ ମନ ମିଶିଲା-
ବୁଡ଼ିଗଲି ପ୍ରୀତି ଝରଣାରେ ।(୧)

ମୋ ହୃଦୟ ଚାବି ତୁମ ପାଶେଥିଲା,
ସହଜରେ ଖୋଲିଦେଲ ମନତାଲା ।
ତୁମହେଲ ମୋର ମୁଁ ହେଲି ତୁମର-
ଘରେ ସଭିଙ୍କର ଅଜଣାରେ ।(୨)

୦୦୦



# ଜୀବନର ଚଲାପଥ

ଜୀବନର ଚଲାପଥ ସତେ ଅଙ୍କା ବଙ୍କା ନଇ,
କେଉଁ କୂଳ ଗଢେ ସିନା  କେବେ ଆର କୂଳ ଖାଇ ।(ଘୋଷା)

ହସ କାନ୍ଦ ସୁଖ ଦୁଃଖ ସେ ପଥରେ ହୁଏ ସାଥୀ,
କେବେ ଢାଳେ ହୀରା ମୋତି କେବେ ପୁଣି ଅମାରାତି ।
କେବେ ପୁଣି ଚାପି ରଖେ ମଥାରେ ବୋଝକୁ ଥୋଇ ।(୧)

ଭାଗ୍ୟ ଚାଲେ ସେଇ ପଥେ ଧରି କେତେ ଶୁଭଫଳ,
କେବେ ସବୁ ଧୋଇନିଏ ନିଜେ ସାଜି ମହାକାଳ ।
କେବେ ସୁଖ ଦେଖାଦିଏ ଆକାଶର ତାରା ହୋଇ ।(୨)

ooo



# ଏକା ଏକା ଥିଲେ ମୋତେ

ଏକା ଏକା ଥିଲେ ମୋତେ ଲାଗୁଥାଏ-
ତୁମେ ମୋ ପାଖରେ ବସୁଛ,
ହସକଥା ଟିକେ ମନେ ପଡ଼ିଗଲେ-
ଲାଗୁଛି ତୁମେ ହିଁ ହସୁଛ ।(ଘୋଷା)

ଗୀତ ଲେଖୁଥିଲେ ତୁମ ରୂପ ଛବି-
ମୋ ଆଗରେ ଉଭା ହୁଏ,
କେତେ ନୂଆ ଭାଷା ସୁରରେ ତାଳରେ-
ବଳେ ବଳେ ଆସିଯାଏ ।
ନିରୋଳା ଆକାଶେ ଜହ୍ନରେ ଦେଖେ ମୁଁ-
ତୁମେ ତା' ସାଥୀରେ ଭାସୁଛ ।(୧)

ଫୁଲ ଫୁଟିଥିଲେ ବଗିଚା ମହକେ-
ବାଉଳା ହୁଏ ମୋ ମନ,
ତୁମ ଓଠ ପରି ପାଖୁଡ଼ାକୁ ମେଲି-
ସିଏ ହୁଏ ଛନଛନ ।
ପାହାନ୍ତା ସପନେ ଦେଖୁଛି ତୁମକୁ-
ମୋ ଦୁଆର ଖୋଲି ଆସୁଛ ।(୨)

୦୦୦



# ଯାଉଥିଲି ମୁଁ ନିଜ ବାଟରେ

ଯାଉଥିଲି ମୁଁ ନିଜ ବାଟରେ-ମୋତେ କାହିଁକି ଚାହିଁଲ,
ପଚାରିନାହିଁ କିଛି ତୁମକୁ କାହିଁକି-କଥା କହିଲ ?(ଘୋଷା)

ଅଚିହ୍ନା ଥିଲ ତୁମେ ତ ପୁଣି ମୁଁ ବି ଥିଲି ଅଜଣା,
ନିଜ ଠିକଣା କାହିଁକି ଦେଲ ନେଲ ମୋ ଘର ଠିକଣା ।
ସତ କହିଲ ଆମ ଭିତରେ କେଉଁ ସମ୍ପର୍କ ଥୋଇଲ ?(୧)

ପ୍ରଥମ ଦେଖା ପ୍ରଥମ ଚିହ୍ନା ସେଥିରୁ ପ୍ରେମ ହୋଇଲା,
ସେଇ ପ୍ରେମରୁ ବିରହ ପୁଣି ମନ ତୁମକୁ ଚାହିଁଲା ।
ମନକୁ ମୋର ଚଗଲା କରି କେଉଁଠି ସୁଖେ ରହିଲ ?(୨)

୦୦୦



# ତୁମ ପାଇଁ

ତୁମ ପାଇଁ ସିନା ଲେଖିଛି କବିତା-
ଲେଖିବି ପ୍ରେମର ପୋଥି,
ସେ ପୋଥିରେ ଥିବ ତୁମର ଆମର-
ଭାବ ଦିଆନିଆ ଚିଠି ।(ଘୋଷା)

ଲେଖିଥିଲ ଯାହା କହିଥିଲ ଯାହା ଦେଇଥିଲ ଯାହା ମୋତେ,
ପ୍ରତିଶ୍ରୁତି ପୁଣି ଯାହା ଦେଇଥିଲ ହାତ ରଖି ମୋର ହାତେ ।
ପୁରୁଣା କଥାକୁ ମନେ ପକେଇଛ-
ସେ ସବୁ ହୋଇବ ନଥି ।(୧)

ତୁମର ମୋହର ପ୍ରେମ କାହାଣୀକୁ ରଖିବା ସାଇତି କରି,
ଅତୀତର ମିଠା ସବୁଜ ସପନ ମନକୁ ଆସିବ ଫେରି ।
ଲେଖିଦେବି ପୁଣି କେମିତି ହୋଇଲ-
ତୁମେ ମୋ ଜୀବନ ସାଥୀ ।(୨)

000



# ତୁମେ ନଥିଲେ ଜୀବନ

ତୁମେ ନଥିଲେ ଜୀବନ ମୋର ସୁଅ ମୁହଁରେ ଶୁଖା ପତର,
ତୁମରି ପାଇଁ ଆକାଶ ଛୁଇଁ ପାରୁଛି ଡେଇଁ ମହାସାଗର ।(ଘୋଷା)

ତୁମେ ଆସିଲ ସପନ ଦେଲ,
ସେଇ ସପନେ ସରଗ ନେଲ ।
ମନରେ ମୋର ଦେଇଛ ରଙ୍ଗ-
ସେଥିରେ ପୁଣି ବାସ ଅତର । (୧)

ତୁମକୁ ପାଇ ବସିଛି ମିତ,
ତୁମରି ପାଇଁ ଗାଉଛି ଗୀତ ।
ମନରେ ମୋର ଦେଇଛ ରଙ୍ଗ-
ତୁମରି ପାଇଁ ନାହିଁ ମୋ ଡର ତୁମରି ବିନା ହୁଏ କାତର ।(୨)

୦୦୦



## ତୁମ ହାତଲେଖା ଚିଠି ଖଣ୍ଡେ ପାଇ

ତୁମ ହାତଲେଖା ଚିଠିଖଣ୍ଡେ ପାଇ-ତୁମକଥା ବସିଭାବେ,
କେଉଁଠି ଲେଖିଛ ଭଲପାଏ ବୋଲି-ସେହି ଧାଡ଼ିଟିକୁ ଖୋଜେ ।(୦)

ଏଇଚିଠି ଆମ ପ୍ରୀତି ପ୍ରଣୟର-
ମୂଳଦୁଆ ପକେଇଛି,
ତୁମଠାରୁ ମୋର ସବୁ ଦୂରତାକୁ-
କାଟି କାଟି କମେଇଛି ।
ଏଇମିତି ଚିଠି ଲୁଚେଇ ପଢ଼ିଲେ-ମନ ତୁମଠାରେ ହଜେ ।(୧)

ଜାଣିଲି ଏଥର ଚିଠି ଲେଖିବାର-
କଳା ତୁମେ ଜାଣିଲଣି,
ନଲେଖି ନଲେଖି ବହୁତ ଲେଖିବା-
କାହାଠାରୁ ଶିଖିଲଣି ।
ଏବେ ପ୍ରେମକଳା ଶିଖିବା ରହିଲା ଶିଖି ନେଇଯିବ ନିଜେ ।(୨)

୦୦୦



## ସୁଖ ପରେ

ରସିକର ପାଇଁ ପ୍ରେମ ଶବଦଟି ଫିଟାଏ ଅମୃତ ଧାର,
ଅରସିକ ପାଇଁ ସେହି ଶବଦଟି ହୋଇଥାଏ ଦୁଃଖଭାର ।(ଘୋଷା)

ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ-
ଯାଉଥିବ ଆସୁଥିବ,
ପ୍ରେମ ପ୍ରୀତି ଆଉ ପ୍ରଣୟର ଗୀତି-
ଚିରଦିନ ରହିଥିବ ।
ଭଲ ପାଇବାର ଅମୁହାଁ ଦେଉଳେ ଶୁଭେ ପ୍ରୀତି ସୁର ।(୧)

ପ୍ରେମର ମହକ ପ୍ରୀତିର ଜୁଆର-
ସପନର ସୁଖ ଖୋଜି,
ଅଲିଭା ସଳିତା ପ୍ରେମ ଦୀପ ଜାଳି-
ଭାବନାରେ ଯାଏ ଭିଜି ।
ପ୍ରେମରେ ଯେ ଚାଖିଛି ପ୍ରେମରେ ଜଳିଛି-
ତା' ପାଇଁ ଜୀବନ ଛାର ।(୨)

000



# କେତେଦିନ ଯାଏ କହୁଥିବ

କେତେଦିନ ଯାଏ କହୁଥିବ ତୁମେ ଆଉ କିଛିଦିନ ଯାଉ,
ସନ୍ଦେହ ଘେରରେ ରହିଲେଣି ଆମେ ଜାଣିଲେଣି ବାପା ବୋଉ ।( ଘୋଷା)

ମନ ମୋର ଏବେ ପବନରେ ଉଡ଼େ-
ଦେହର ଦହନ ବ୍ୟଥା,
କହି ପାରୁନାହିଁ ସହି ପାରୁନାହିଁ-
ଗୋପନ ଗହନ କଥା ।
କାହିଁକି କେମିତି କେବେଠୁଁ ଏମିତି ହେଲା ବୁଝିନାହିଁ ଆଉ ।(୧)

ସ୍ମୃତି ହେବା ପାଇଁ ଝୁରି ମରିବାକୁ-
ତୁମକୁ ପାଉନି ଭଲ,
ଆମ ପ୍ରେମ ସତ୍ୟ ଚିରଞ୍ଜିବୀ ହେବ-
ପ୍ରତିଶ୍ରୁତି ଦେଇଥିଲ ।
ସେହି ପ୍ରତିଶ୍ରୁତି ପାଳନ କରିବା- ଆଉ ସବୁ ପଛେ ଥାଉ ।(୨)

୦୦୦



# କଥା ଦେଇଥିଲ ଆମେ

କଥା ଦେଇଥିଲ ଆମେ ଦୁହେଁ କେବେ-
ଅଲଗା ହୋଇବା ନାହିଁ,
ଦରକାର ହେଲେ ଜୀବନର ବାଜି-
ଲଗାଇବା ପ୍ରେମ ପାଇଁ ।(ଘୋଷା)

ଆଜି ତୁମକଥା ସତ ହୋଇଗଲା-
ପାଇଲେ ଦୁହିଁଙ୍କୁ ଦୁହେଁ,
ପ୍ରମାଣିତ କଲ ପ୍ରେମ ଏକା ସତ୍ୟ-
ଆଉ କିଛି ସତ୍ୟ ନୁହେଁ ।
ସଫଳ ହୋଇଲା ଏ' ଜୀବନ ମୋର-
ତୁମକୁ ପାଖରେ ପାଇ ।(୧)

କହିଥିଲ ଦିନେ ନିରୋଳାରେ ବସି-
ମୋ ହାତରେ ହାତ ଥୋଇ ।
ଏ' ଦୁଇ ହାତରେ ଗଣ୍ଠି ପଡ଼ିଯିବ-
ସବୁ ରହିଥିବେ ଚାହିଁ ।
ଆଜି ମୋ ହାତରେ ଗଣ୍ଠି ପଡ଼ିଗଲା-
ସାତ ଜନମର ପାଇଁ ।(୨)

000



# ସପନରେ ଆଉ ତୁମେ

ସପନରେ ଆଉ ତୁମେ ଆସନା-ଆସନା-ଆସନା,
ମୋର ମନ ବଗିଚାରେ ଆଉ ଫୁଲ ଫୁଟାନା ।(ଘୋଷା)

ନିରୋଳାରେ ଗପିବାକୁ ମୋତେ ଆଉ ଡାକନା,
ମୋ ନାମକୁ ଜପି ଜପି ଆଉ ଝୁରି ହୁଅନା ।
ଘରେ ଦେଖାଇ ପାରୁନି ଆଉ ମିଛ ବାହାନା ।(୧)

ବୁଝି ପାରୁଛି ତୁମର ସବୁ ମନକଥାକୁ ।
ଦେଖି ପାରୁଛି ଦୂରରୁ ତୁମ ମନବ୍ୟଥାକୁ ।
ପ୍ରେମ ପ୍ରୀତି କଥାକହି ଆଉ ଦୁଃଖ ଦିଅନା ।(୨)

୦୦୦



# କଥା ହେବା ଆମେ

କଥା ହେବା ଆମେ ଦୁହେଁ ଚୁପିଚୁପି,
ଦେଖା ହେବା ଆମେ ଦୁହେଁ ଛୁପିଛୁପି ।(ଘୋଷା)

ଦିନ ଆମ ବିତିଯିବ,
କଥା ତ ସରୁ ନଥିବ,
ସପନ ଦେଖିବା ଆମେ ଦିନରାତି ।(୧)

ତୁମେ ମୋର ହାତଧରି,
ହସୁଥିବ କିରିକିରି,
ତୁମ କଥାରେ ହସିବି ଚାପିଚାପି ।(୨)

ଏକୁଟିଆ ଥିଲେ ମୁହିଁ,
ସବୁକଥା ଭୁଲିଯାଇ,
ବସୁଥିବି ତୁମ ନାମ ଜପିଜପି ।(୩)

000



# ଦୂରେ ରହିଲେ ବି ତୁମେ

ଦୂରେ ରହିଲେ ବି ତୁମେ ମୋ ହୃଦୟେ-
ଚିରଦିନ ରହିଗଲ,
ନିଜେ ନ ଆସି ବି ସପନରେ କାଲି-
କେତେକଥା କହିଦେଲ ।(ଘୋଷା)

ଏ' ଜନମେ ଯଦି ତୁମ ସାଥେ ମୋର-
କେବେ ଦେଖା ହେବନାହିଁ,
ଥରକୁ ଥରକୁ ମୁଁ ଜନମି ରହିବି-
ତୁମରି ବାଟକୁ ଚାହିଁ ।
ଲିଭିବ କେମିତି ମନ କାଗଜରେ-
ତୁମେ ଯାହା ଲେଖିଥିଲ ।(୧)

ଫଗୁଣ ଗଲେ ବି ବଇଶାଖୀ ଫୁଲ-
ଫୁଟି ବାସ ଚହଟାଏ,
ଶ୍ରାବଣ ଗଲେ ବି ବରଷା ବରଷେ-
ସେଥିରେ ବି ଭିଜିହୁଏ ।
ଚହଲା ମନରେ ବହଳ ବସିଲେ-
ଟାଣହୁଏ ପ୍ରେମ ଜାଲ ।(୨)

୦୦୦



# କେଡ଼େ ଅନୁପମ

କେଡ଼େ ଅନୁପମ ପ୍ରକୃତିର ଦାନ-
ପ୍ରେମ ଏକ ମହାଶକ୍ତି,
ପ୍ରେମରୁ ପ୍ରଗତି ପ୍ରେମ ଦିଏ ଶାନ୍ତି -
ପ୍ରେମରୁ ମିଳଇ ମୁକ୍ତି ।(ଘୋଷା)

ପ୍ରେମ ହିଁ ଜୀବନ ପ୍ରେମ ମହାପୁଣ୍ୟ-
ପ୍ରେମରୁ ହୁଏ ମିଳନ,
ପ୍ରେମ ବିନା କାହିଁ ସୁଖ ଶାନ୍ତି ନାହିଁ-
ପତିତ ପାଇଁ ପାବନ ।
ପ୍ରେମ ସୁଧାରସ ଆହା କି ସରସ-
ହୃଦୟେ ଜଗାଏ ଭକ୍ତି ।(୧)

ଦାନରେ ଯା' ମନ ପ୍ରେମ କରେ ଧନ୍ୟ-
ପ୍ରେମରେ ନଥାଏ ଚୁକ୍ତି,
ପ୍ରେମମୟ ଏହି ଚରାଚର ମହୀ-
ପ୍ରେମ କରେନାହିଁ ଯୁକ୍ତି ।
ପ୍ରେମ ହିଁ ଈଶ୍ୱର ପ୍ରେମରୁ ସଂସାର-
ପ୍ରେମ ପ୍ରକୃତିର ମୂର୍ତ୍ତି ।(୨)

୦୦୦



# ଅଳସୀ କନ୍ୟା

ଅଳସୀ କନ୍ୟାର ଅଳସ ଭାଙ୍ଗିନି-
କାଖରେ କଳସ ଥୋଇ,
ଚାହିଁଦେଇ ମୋତେ ହସିଦେଲା ଖାଲି-
ପଦିଏ କହିଲା ନାହିଁ ।(ଘୋଷା)
ମୁହଁ ମୋଡ଼ିଦେଇ ଚାଲିଗଲା ସିନା-
ଛାଡ଼ି ଦେଇଗଲା ଦାଗ,
ସେହି ମିଠାଦାଗ ହୃଦୟରେ ମୋର-
ବଢାଇଲା ଅନୁରାଗ ।
କାଲି ଆସିବ ସେ ଏଇବାଟ ଦେଇ-
ରହିବି ତା' ବାଟ ଚାହିଁ ।(୧)

ଆଜି ନହେଲେ ବି କାଲି ସେ ଆସିବ-
ମୁଁ ତାହାକୁ ଭଲପାଏ,
ମିଛ ରାଗ ସିନା କୁହୁକ ଲଗାଏ-
ମମତା ବଢାଇ ଦିଏ ।
ମୋର ମନକଥା ଜାଣେ ସେ ନିଜର-
ମନଖୋଲି ଦେବ କହି ।(୨)

୦୦୦



# ଭଲ ପାଉଥିଲି

ଭଲ ପାଉଥିଲି ଭଲ ମୁଁ ପାଉଛି-
ପୁଣି ଭଲ ପାଉଥିବି,
କଥା ଦେଇଥିଲି କଥା ମୁଁ ଦେଉଛି-
ତୁମର ହୋଇ ରହିବି ।(ଘୋଷା)

କହିଲେ କେ କହୁ ଯାତନା ବି ଦେଉ-
ପାଇଲେ ପାଇବି ନିନ୍ଦା,
ତୁମରି ହୃଦୟେ ମୋର ପ୍ରେମ ରଜ୍ଜୁ-
ରହିଥିବ ହୋଇ ବନ୍ଧା ।
ତୁମ ଦୁଃଖ ଯେତେ ଦେଇଦେବ ମୋତେ-
ସବୁତକ ମୁହିଁ ନେବି ।(୧)

ତୁମରି ଓଠରେ ମିଠା ହସ ଆଉ-
ବୁକୁରେ ଭରିବି ପ୍ରୀତି,
ହୃଦୟରେ ଦେବି ଅଭୁଲା ଝଙ୍କାର-
ପ୍ରଣୟରେ ମଧୁଗୀତି ।
ଚାନ୍ଦ ପାଇଁ ସିନା ଝୁରେ କୁମୁଦିନୀ-
ତୁମକୁ ମୁଁ ଝୁରିହେବି ।(୨)

୦୦୦



# ମୋ ମନେ ଭରିଦେଲ

ମୋ ମନେ ଭରିଦେଲ ଦହନ-ଦେହରେ ଦେଲ ନିଆଁ,
ସେହି ନିଆଁରେ ଜଳିଗଲି ମୁଁ ବଳକା ଅଛି ଧୂଆଁ ।(ଘୋଷା)

ବାଟରେ କଣ୍ଟା ବିଛେଇ ଦେଲ-
ଫୁଲ ଶେଜକୁ କାଢି,
ମହୁରେ ବିଷ ମିଶେଇ ତୁମେ-
ମୋ ପାଇଁ ଦେଲ ବାଢି ।
ଆଉ କା' ହାତ ଧରିଲ ମୋର-
ଗାଲରେ ଦେଲ ଚିଆଁ ।(୧)

ଏମିତି ଦିନ ଆସିବ ପୁଣି-
ଭାବି ନଥିଲି ମନେ,
ଅତି ନିଜର ମଣିଷ ହୋଇ-
ବଦଳି ଯିବ ଦିନେ ।
କୁହ କେମିତି ଭୁଲି ପାରିବି-
ତୁମ ପହିଲି ଛୁଆଁ ।(୨)

୦୦୦



# ଆସିଥିଲ ତୁମେ

ଆସିଥିଲ ତୁମେ ସାଥେ ଫଗୁଣକୁ ନେଇକି,
ଚାଲିଗଲ ମୋ ଆଖିରେ ଶ୍ରାବଣକୁ ଦେଇକି ।(ଘୋଷା)

ଭିଜା ରହିଗଲା ଆଖି ହୃଦୟରେ ଦହନ,
କାଳ ବଇଶାଖୀ ସାଥେ ଜଳୁଛି ମୋ ଜୀବନ ।
କେମିତି ମୁଁ ବୁଝେଇବି କେଉଁ କଥା କହିକି ? (୧)

ଜହ୍ନରେ ଜ୍ୟୋଛନା ନାହିଁ ତାରା ହସେନାହିଁ,
ଫୁଲରେ ସୁଗନ୍ଧ ନାହିଁ ବାଆ ବହେ ନାହିଁ ।
ବିରହ ବଇଁଶି ସୁର ଶୁଭେ ରହି ରହିକି । (୨)

ମନର ମଣିଷ ମୋର ହେଲା ସାତପର,
ପାଦତଳ ମାଟି ଏବେ ହୁଏ ଥରହର ।
ପ୍ରୀତି ଝରଣାରେ ମୋର ଲହୁ ଯାଏ ବହିକି । (୩)

୦୦୦



# ନାଣ୍ଠି ଲୋ ନାଣ୍ଠି

ନାଣ୍ଠି ଲୋ ନାଣ୍ଠି ତୁ ଏଡ଼ିକି ହୁଣ୍ଡୀ, ତୁ ଏଡ଼ିକି ହୁଣ୍ଡୀ ?
ଫୁଲ ବଗିଚାର ଗୋଲାପ ହୋଇ ତୁ-
ନିଜକୁ ମଣିଛୁ କାଶତଣ୍ଡି ।(ଘୋଷା)

କାହାପାଇଁ ତୁହି ବାଡ଼ି କାନିଶିରୀ-
କାହା ପାଇଁ ଦୁବଘାସ,
କିଏ କହେ ତୋତେ ଶିଙ୍ଘାଣିନାକୀଟା-
ପଳାସର ନାହିଁ ବାସ ।
ମୁଁ ତ ଜାଣିଛି ରଜନୀଗନ୍ଧା ତୁ-
ମହୁହାଣ୍ଡି ଆଉ ଗୁଡ଼ହାଣ୍ଡି ।(୧)

ଗାଆଁ ଲୋକେ ସିନା ଶରଧାରେ ତୋତେ-
ଡାକନ୍ତି ଲୋ ନାଣ୍ଠି-ନାଣ୍ଠି,
ନୟନତାରା ତୋ ଶୁଭନାମ ଥାଇ-
ଆଇ ଡାକେ ରଣଚଣ୍ଡୀ ।
ମୋ ହାତ ଧରିଲେ ଘରଣୀ ହୋଇଲେ-
ସବୁ ଦୋଷ ତୋର ଯିବ ଛିଣ୍ଡି ।(୨)

୦୦୦



# ମିଠା ମିଠା ଲାଗେ

ମିଠା ମିଠା ଲାଗେ ଯାତନା ବାହାନା-
ପ୍ରେମଭାବ ଥାଏ ଯେଉଁଠି,
କୁହୁଡ଼ି ପହଁରା ଭାରି ମଜାଲାଗେ-
ମିଛ ଲାଗେ ସତ ସେଇଠି ।(ଘୋଷା)

ଦୁଇମନ ଯଦି ଏକ ହୋଇଯାଏ-
ଆକାଶରୁ ଖସେ କୁସୁମ,
ହାତ ପାହାନ୍ତାରେ ଜହ୍ନ ଆସି ଉଏଁ-
ବରଫ ବି ଲାଗେ ଉଷୁମ ।
ମରୁ ମରିଚିକା ମାୟା ପ୍ରହେଳିକା-
ଦିଶେନାହିଁ କେବେ କେଉଁଠି ।(୧)

ଥିଲେ ପ୍ରେମନିଶା ଲାଗେ କଟୁଭାଷା-
ଚନ୍ଦନ ଲିପିଲା ପରି,
ସଂସାରଟା ମିଛ ଜୀବନଟା ତୁଚ୍ଛ-
ନୁହେଁ କେହି ପ୍ରେମ ସରି ।
ପ୍ରତାରଣା ତା'ର ପୂର୍ଣ୍ଣଛେଦ ଟାଣେ-
ଥାଉ ପଛେ ପ୍ରୀତି ବଇଠି ।(୨)

୦୦୦



# କାହିଁକି ଆଉ ମୁଁ

କାହିଁକି ଆଉ ମୁଁ ପଥର ଆଗରେ-
କହିବି ହୃଦୟ ଭାଷା ?
କାହିଁକି ଆଉ ମୁଁ ରଖିବି ମନରେ-
ଆକାଶ ଛୁଇଁବା ଆଶା ।(ଘୋଷା)

ସିଏ କି ବୁଝିବ ମୋର ଚଲାପଥ-
ଅଙ୍କାବଙ୍କା କଣ୍ଟକିତ,
ସିଏ କି ଜାଣିବ ଅଦିନ ଅନ୍ଧାରେ-
ହୋଇଛି ମୁଁ କଳଙ୍କିତ ।
କାହିଁକି ଆଉ ମୁଁ ତାକୁ ଝୁରି ଝୁରି-
ହେବି ମିଛେ ଲୋକହସା ।(୧)

ସିଏ କି ପୋଛିବ ମୋ ଆଖିର ଲୁହ-
ସାଉଁଳେଇ ଦେବ ମଥା,
ଚନ୍ଦନ ଲିପିବ ଦହନ ମନରେ-
କହି ପଦେ ମିଠାକଥା ।
କାହିଁକି ଆଉ ମୁଁ ହାତପାତି ପୁଣି-
ମାଗିବି ପ୍ରୀତିର ନିଶା ।(୨)

୦୦୦



# ପଥର ବି ପାଣି ହୁଏ

ପଥର ବି ପାଣି ହୁଏ-ପାଣି ହୁଏ ପଥର,
ଆଖି ଲୁହ ଜାଳିପାରେ-ପ୍ରେମର ଏ' ମନ୍ତର ।(ଘୋଷା)

ମାଗେନାହିଁ ଆସି କେହି ଜହ୍ନ ପାଶେ ଜ୍ୟୋଛନା,
ମାଗେନାହିଁ ଫୁଲ ପାଶେ ଦିଅଟିକେ ବାସନା ।
ପାଇବାକୁ ଲୋଡ଼ା ସିନା ପ୍ରୀତି ଭରା ଅନ୍ତର ।(୧)

ଅନୁରାଗ ଥିଲେ ସିନା ସୀମାରେଖା ଡେଇଁବ,
ବାସର ବିଳାସେ ତୁମ ଅମାରାତି ପାହିବ ।
ନିରାଶା ମରୁରେ ପୁଣି ଛୁଟେ ବାସ ଅତର ।(୨)

୦୦୦



# କିଛି କିଛି ଚିଜ ଅନ୍ଧାରରେ ଦିଶେ

କିଛି କିଛି ଚିଜ ଅନ୍ଧାରରେ ଦିଶେ ଆଲୋକରେ ଦିଶେ ନାହିଁ,
କିଛି କିଛି କଥା ଏମିତି ରହିଛି ଆଖି ଦେଇପାରେ କହି ।(ଘୋଷା)

ବେଳେବେଳେ ପୁଣି ସୁଖ ମିଳିଥାଏ କିଛି ହଜିଗଲା ପରେ,
ଲୁଚିଲୁଚି କିଛି କହିବାର ମଜା ନାହିଁ ଆଉ କେଉଁଥିରେ ।
କୁହୁଡ଼ି ପହଁରା ମିଠାସୁଖ ଆଉ-
ଦେଇପାରେ ନାହିଁ କେହି ।(୧)

ସତଠାରୁ କେତେ ସପନ ସୁନ୍ଦର ଅନୁଭବୀ ସିନା ଜାଣେ,
ଚିହ୍ନା ଲୋକଠାରୁ ଅଚିହ୍ନା ଲୋକର ଅନୁରାଗ ମନ କିଣେ ।
କେବେ କେବେ ପୁଣି ଲାଗଇ କଳଙ୍କ-
ବିଜୟର ଟୀକା ହୋଇ ।(୨)

୦୦୦



# ମେଘ ବରଷିଲେ

ମେଘ ବରଷିଲେ ସରିଯାଏ ନାହିଁ-
ମାଟିକୁ ଭିଜେଇ ଦିଏ,
କହିଦେଲେ କଥା ସରିଯାଏ ନାହିଁ-
ସ୍ମୃତି ହୋଇ ରହିଯାଏ ।(ଘୋଷା)

ପ୍ରେମ ସାଗରରୁ ଆଞ୍ଜୁଳାଏ ଦେଲେ-
ବଢେ ସିନା କମେନାହିଁ,
ହୃଦ ସିଂହାସନେ ବସିଗଲେ କେହି-
ଓଜନଟା ବଢେନାହିଁ ।
ସୁଖ ବାଣ୍ଟୁଥିଲେ ପୁଣି ସୁଖ ମିଳେ-
ଶୂନ୍ୟ ପୁଣି ପୂର୍ଣ୍ଣ ହୁଏ ।(୧)

ଭାବ ଦିଆନିଆ ଅଭାବ ହୋଇଲେ-
ବଢେ ସିନା ଅଭିମାନ,
ସେଇ ଅଭିମାନ ବାଦଲ ସମାନ-
ଉଡ଼ିଗଲେ ଯୋଡ଼େ ମନ ।
ମିଠାକଥା ପଦେ କୋମଳ ପରଶ-
ହୃଦୟକୁ ସିନା ଛୁଏଁ ।(୨)

୦୦୦



# ରୂପା ସିନ୍ଦୁକର ସୁନା ଫରୁଆ

ରୂପା ସିନ୍ଦୁକର ସୁନା ଫରୁଆରେ ପଡ଼ିଥିଲା ହୀରା ତାଲା,
ତା ଭିତରେ ମୋର ମନ ଲୁଚିଥିଲା-କେହି ଜଣେ ଖୋଲିଦେଲା ।(ଘୋଷା)

ଅନେକ ଫଗୁଣ ସହିଥିଲା ମନ-
ମଳୟକୁ ଠେଲିଦେଇ,
କେତେ ଯେ ଶ୍ରାବଣ ବରଷି ଥକିଲେ-
ପାରିଲେନି ମୋତେ ଧୋଇ ।
ବୟସ ଡେଣାରେ ଉଡ଼ି ବୁଲୁଥିଲି-ସେ ଡେଣା ଦୁର୍ବଳ ହେଲା ।(୧)

ମୋର ଟାଣ ପଣ ଭାଙ୍ଗିଲା କେମିତି-
ସେ କଥା ମୁଁ ଜାଣେନାହିଁ,
ସେହି ଯାଦୁକର ଜାଣେ କି ମନ୍ତର-
ମୋ ମନକୁ ଦେଲା ଛୁଇଁ ।
ଆଜି ମୁଁ ଦେଖୁଛି ସପନରେ ତାକୁ-ଯିଏ ମୋର ମନ ନେଲା ।(୨)

୦୦୦



# ମୋତେ କରିନେ କରିନେ

ମୋତେ କରିନେ କରିନେ ତୋ- ବାଳିକା ବନ୍ଧୁ,
ତୋତେ ପାରି କରିଦେବି-ପ୍ରେମର ସିନ୍ଧୁ ।(ଘୋଷା)

ବୁଲିବି ତୋ' ସାଥୀରେ, ଗପୁଥିବି ରାତିରେ ।
ମୁଁ ଏକା ହେବି ତୋର, ନାହିଁ କାହାକୁ ଡର ।
ମୋତେ ଦେଖି ତୋତେ କିଏ ନିନ୍ଦିବ ନିନ୍ଦୁ ।(୧)

ବୁଲିବା ଫୁଲବନେ, ଖେଳିବା ଖୋଲାମନେ ।
ଥାଆନ୍ତୁ ଯେତେ ଚିହ୍ନା, ହୋଇଯିବା ଅଜଣା ।
ତୋତେ ମୋତେ ଧରି କିଏ ବାନ୍ଧୁଛି ବାନ୍ଧୁ ।(୨)

୦୦୦



# କହୁ କହୁ ସିନା ଭଲପାଏ

କହୁ କହୁ ସିନା ଭଲପାଏ ବୋଲି-ମୋ ତୁଣ୍ଡରୁ ଖସିଗଲା,
ହସୁ ହସୁ ସିନା ହସି ଦେଇଥିଲି-ସେ ହସ ଭଗାରି ହେଲା ।(ଘୋଷା)

ସେହି କଥା ପଦେ କେମିତି ଫେରିବ-
ଭାବୁଥିଲି ରାତିଦିନ,
ଭାବୁଭାବୁ ପୁଣି ତାଙ୍କ କଥା ଭାବି-
ମନ ହୁଏ ଛନଛନ ।
ଜାଣି ପାରେନା ମୁଁ କହି ପାରେନା ମୁଁ-
କିଏ କାହା ମନ ନେଲା ?(୧)

କଥାରେ ହସରେ ଅଜଣା ମଣିଷ-
ହୋଇଗଲା ଆପଣାର,
ମନରେ କଥାକୁ କହିବି କାହାକୁ-
ଲାଗେ ଦୁନିଆକୁ ଡର ।
ଘରେ ଜାଣିଗଲେ ଗାଆଁରେ ଜାଣିଲେ-
ଲାଗିଯିବ ବାଦିପାଲା ।(୨)

୦୦୦



## ସାଗର ବାଲିରେ କଅଁଳ ଘାସ

ସାଗର ବାଲିରେ କଅଁଳ ଘାସରେ ଚାଲିବାକୁ ମୋତେ ମନା,
ମଧୁର ସପନେ ଆକାଶ କୁସୁମ ଛୁଇଁବାକୁ ମୋତେ ମନା ।(ଘୋଷା)

ବାଲି ଧସିଯିବ କଣ୍ଟା ବାଜିଯିବ-
ସପନ ବି ଭାଙ୍ଗିଯିବ ।
ଆକାଶ କୁସୁମ ଆକାଶରେ ଥାଇ-
ମୋତେ ପୁଣି ଚିଡ଼େଇବ ।
ସେଇ ଆଘାତରେ ଲହୁ ବହିବନି- ଲୁହ ବହୁଥିବ ସିନା ।(୧)

ଭଲ ପାଇବାର ଭଇରବୀ ଗାଇ-
ପାଗଳ ହୋଇବି ମୁହିଁ,
ସେଇ ଗୀତ ଭାବ ଭାଷା ଆଉ ମର୍ମ-
ବୁଝିବାକୁ କେହି ନାହିଁ ।
ନିରାଶା ଜୀବନ ମରୁ ପ୍ରାନ୍ତରରେ-ଚାଲିଯିବ ପ୍ରେମ ବିନା ।(୨)

୦୦୦



# ମୋ ପ୍ରେମ ମନ୍ଦିର ନିଅଁ

ମୋ ପ୍ରେମ ମନ୍ଦିର ନିଅଁ ପଡ଼ିଥିଲା-
ତୁମରି ଦାଣ୍ଡ ଦୁଆରେ,
ସେ ମନ୍ଦିର ଆଜି ଆକାଶ ଛୁଇଁଛି-
ତୁମରି ହାତ ଛୁଆଁରେ ।(ଘୋଷା)

ବରଷା ଆସିଛି ଧୋଇକି ଯାଇଛି-
ସବୁଯାକ ଧୂଳି ମଳି,
ଫଗୁଣ ଆସିଛି ଫୁଲ ଫୁଟାଇଛି-
ଆଣିଥିଲ ତାକୁ ତୋଳି ।
ସେହି ଫୁଲ ଧରି ତୁମେ ବି ପୂଜିଲ-
ପ୍ରେମ ମନ୍ଦିର ବାହାରେ ।(୧)

ଶୀତୁଆ ରାତିରେ ବିଜନ ବେଳାରେ-
ତୁମେ ଜାଳୁଥିଲ ଦୀପ,
ମୁହିଁ ତୁମ ପାଇଁ ତୁମେ ମୋର ପାଇଁ-
ମନ୍ଦିରେ ଜାଳିଲେ ଧୂପ ।
ସେହି ଦୀପ ଧୂପ ଆଣିଦେଲା ତାପ-
ଜଳିଲେ ପ୍ରେମ ନିଆଁରେ ।(୨)

୦୦୦



# ପ୍ରୀତିର ମୂଲକୁ ବୁଝିବାକୁ ଲୋଡ଼ା

ପ୍ରୀତିର ମୂଲକୁ ବୁଝିବାକୁ ଲୋଡ଼ା-ମନ ପରି ମନଟିଏ,
ଗହନ ମନର ବ୍ୟଥା ବୁଝିବାକୁ-ହୃଦୟଟି ଲୋଡ଼ା ହୁଏ ।(ଘୋଷା)

ପଙ୍କରୁ ପଙ୍କଜ ତୋଳି ଆଣିବାକୁ-
ଛାତିରେ ସାହସ ଲୋଡ଼ା,
କଳାରୁ କଳଙ୍କ ଛଡ଼ାଇ ଦେବାକୁ-
ଚିହ୍ନାରା ଗୁଣିଆ ଲୋଡ଼ା ।
ଦରଦୀ ମଣିଷ ଆସିଲେ ଜୀବନେ-ସବୁ ଦୁଃଖ ହରି ନିଏ ।(୧)

ବିରହ ବେଦନା ସୁଖ ଦିଏ ସିନା-
ମିଳନ ବେଳାକୁ ଖୋଜି,
ବରଷା ବିଧୁର ରଜନୀ ଅନ୍ଧାରେ-
ପରିଚୟ ଯାଏ ହଜି ।
ଆଶାର ସଳିତା ଜଳିପାରେ ସିନା-ଥିଲେ ପ୍ରେମ ଦୀପଟିଏ ।(୨)

୦୦୦



# ପ୍ରଶାନ୍ତି ଉଷାର ଅରୁଣିମା

ପ୍ରଶାନ୍ତି ଉଷାର ଅରୁଣିମା ତୁମେ-
ଆସୁଛ ଆଲୋକ ନେଇ,
ମୁହିଁ ନିରିମାଖୀ ପଙ୍କଜ ରହିଛି-
ତୁମରି ପଥକୁ ଚାହିଁ ।(ଘୋଷା)

ମୋ ମନେ ଭରିଛ ଆଶାର ପୁଲକ-ପାଇବି ତୁମ ପରଶ,
ପାଖୁଡ଼ା ମେଲି ମୁଁ ମଧୁ ଯାଚିଦେବି-ମନରେ ଭରି ହରଷ ।
ମଧୁର ଯାତନା ସହିବି ଆନନ୍ଦେ-
କେବଳ ତୁମରି ପାଇଁ ।(୧)

ତୁମେ କି ବୁଝନା ଅନ୍ତର ବେଦନା-ଜାଣନା ବିରହ ବ୍ୟଥା,
ତୁମ ପ୍ରୀତିଦାନ ସ୍ମୃତି ହୋଇ ରହେ-ଗୋଟିଏ ଦିନର କଥା ।
କଥା ଦିଅ ମୋତେ ଗୋଧୂଳି ବେଳାରେ-
ଏକା ଛାଡ଼ି ଯିବନାହିଁ ।(୨)

୦୦୦



## ଫୁଲ ଏକା ବୁଝେ ଭ୍ରମରର ଭାଷା

ଫୁଲ ଏକା ବୁଝେ ଭ୍ରମରର ଭାଷା-ଗୁଞ୍ଜନର ପ୍ରେମଗୀତି,
ଜହ୍ନ ବି ବୁଝେ କଇଁର ମନକୁ-ଢାଳେ ଜ୍ୟୋଛନାର ପ୍ରୀତି ।(ଘୋଷା)

ଝରଣା ବୁଝିଛି ସାଗର ମନକୁ-
ସିଏ କେତେ ଭଲ ପାଏ,
ଭଲ ପାଇବାର ଋଣ ଶୁଝିବାକୁ-
ପାହାଡ଼କୁ ଡେଇଁଯାଏ ।
ଆକାଶ ରଖିଛି ନୀଳିମା ବେଦନା-ବିରହ ମିଳନ ସ୍ମୃତି ।(୧)

ତୁମେ ବି ବୁଝିଛ ମୋ ମନର ଭାଷା-
ଅନେକ ଅକୁହା କଥା,
ତୁମେ ଫିଟାଇଛ ପ୍ରେମ ପ୍ରୀତିଧାରା-
ଦୂରେଇ ମୋ ମନବ୍ୟଥା ।
ଅସାର ସଂସାରେ ପ୍ରେମ ହିଁ ଅମର- ଦିଆନିଆ ପ୍ରେମ ନୀତି ।(୨)

୦୦୦



# କୁଆଁରୀ ବଉଳ

କୁଆଁରୀ ବଉଳ ପଠାଇଲା ଚିଠି-କଅଁଳ ଆମ୍ବ ପତରେ,
ଫଗୁଣ ଛିଞ୍ଚିଲା ସୁବାସ ଅତର-ପବନ ପଢିଲା ଗୀତରେ ।(ଘୋଷା)

ପ୍ରୀତିଫୁଲ ଫୁଟି ଚହଟାଇ ଦେଲା-
ମୋ ହୃଦୟ ଉପବନ,
ପ୍ରଣୟ ଆତୁର କୁଆଁରୀ ବଉଳ-
ଉଛାଟିଲା ମୋର ମନ ।
ଜାଣେ ମୁଁ ଏ' ମିଛ ରାଗ ଅଭିମାନ-ମୋତେ ଭଲପାଏ ଭିତରେ ।(୧)

ସେ ଚିଠିର ଭାଷା ସାଉଁଳେଇ ଦେଲା-
ଅଳସୀ ଦେହକୁ ମୋର,
ଛାଇ ଆଲୁଅର ଲୁଚକାଳି ଖେଳ-
ମୋ ପାଇଁ ଅଲିଭା ଗାର ।
ଖୋଜିଲି ବସନ୍ତେ ପାଇଲି ଶରତେ-ହଜାଇଥିଲି ଶୀତରେ ।(୨)

୦୦୦



# ତୁମରି କଥାକୁ ତୁମେ

ତୁମରି କଥାକୁ ତୁମେ ରଖିଲନି-
ସବୁ ଦୋଷ ହେଲା ମୋର,
ଅଜଣା ମଣିଷ ହୋଇଲା ନିଜର-
ମୁହିଁ ହେଲି ସାତପର ।(ଘୋଷା)

ଅଳପ ଦିନର ଆଳାପ ତୁମର-କିଣି ନେଇଥିଲା ମନ,
ସପନରେ ମୁହିଁ ଗଢି ସାରିଥିଲି-ପାରିଜାତ ଉପବନ ।
ଆଜି ସେ ବନରେ ବିରାଜେ ଶୂନ୍ୟତା-
ଫିଟିଛି ଲୁହର ଧାର ।(୧)

ଝୁରି ମରିବାକୁ ରଖିଲନି ସ୍ମୃତି-ସବୁ ଚିଠି ଦେଲଜାଳି,
ଛବିକୁ ମୋହର ଦେଖିବନି ବୋଲି-କଳାରଙ୍ଗ ଦେଲବୋଳି ।
ଦୂରେ ଫିଙ୍ଗିଦେଲ ଅଲୋଡ଼ା ହେଲା ମୋ-
ଦେଇଥିବା ଉପହାର ।(୨)

000



# ତୁମ ମନ ଗଙ୍ଗା

ତୁମ ମନ ଗଙ୍ଗା ସିନା ମୋ ମନ ଯମୁନା,
ଦୁହିଁଙ୍କ ମିଳନ ପାଇଁ ରହେ ସଦା କାମନା ।(ଘୋଷା)

ତୁମେ ମୋ ପ୍ରେମର ତରୀ ମୁହିଁ ତା'ର ନାଉରୀ,
ମୋର ହୃଦୟରେ ତୁମେ ଖେଳ ଚକା ଭଉଁରୀ ।
ତୁମେ କଥାକୁହା ଶାରୀ ମୁହିଁ ତୁମ ମଇନା ।(୧)

ତୁମ ଆଖିରେ ମୋ ଛବି ମୋ ଆଖିରେ ତୁମର,
ପ୍ରେମ ବିନା ଆଉ କିଛି ଲୋଡ଼ା ନାହିଁ ଆମର ।
ତୁମ ପ୍ରୀତିପାଇଁ ମୁହିଁ ଦେଇଦେଲି ବଇନା ।(୨)

୦୦୦



# ପାଇ ହଜେଇବା

ପାଇ ହଜେଇବା ଖୋଜି ନ ପାଇବା-
କେବେ ଏକା କଥା ନୁହେଁ,
ଜଣକ ବୁକୁରେ ଲହୁ ଶୁଖିଯାଏ-
ଆଉ ଜଣେ କାନ୍ଦୁଥାଏ ।(ଘୋଷା)

ଜଣେ ମୂକ ହୋଇ ଭାବୁଥାଏ କିଛି ଅତୀତକୁ ଝୁରି ଝୁରି,
ଆଉ ଜଣେ ବୁଲେ ଚଞ୍ଚଳ ମନରେ ଆଶାକୁ ଭରସା କରି ।
ହଜେଇବା ଲୋକ ଅତୀତ ସ୍ମୃତିକୁ–ଅନ୍ଧାରେ ସାଉଁଣ୍ଟୁ ଥାଏ ।(୧)

ଅତୀତ ଜଣକୁ ଦୁଃଖ ଦେଇଚାଲେ-ଅନ୍ୟକୁ ଗୋଲାପ ଫୁଲ,
ଭବିଷ୍ୟତ ଦିଶେ ଅନ୍ଧାର ଜଣକୁ-ଅନ୍ୟ ପାଇଁ ମାୟାଜାଲ ।
ନିରସ ହତାଶ ଜଣକ ଜୀବନ-ଆଉ ଜଣେ ସାଥୀ ଚାହେଁ ।(୨)

୦୦୦



# ଆଗରୁ ତୁମର ଘୁଙ୍ଗୁର ଶବଦ

ଆଗରୁ ତୁମର ଘୁଙ୍ଗୁର ଶବଦ-ଝୁମୁଝୁମୁ ବାଜି କହୁଥିଲା ଯାହା,
ଏବେ ସେହି ପାଦ ଝୁଣ୍ଟିଆ ଶବଦ-ରୁଣୁଝୁଣୁ ହେଇ କହିଦେଲା ତାହା ।(ଘୋଷା)

ଆଗରୁ ତୁମର ଓଢଣୀ ଉଡ଼ିଲେ-ତା' ସାଥେ ମୋ ମନ ଯାଉଥିଲା ଉଡ଼ି,
ଏବେ ତୁମ ମଥା ଓଢଣା ଖସିଲେ-ହସିଦିଏ ଟିକେ ଲାଜ ଭୟ ଛାଡ଼ି ।
କୁଙ୍କୁମ ବଦଳେ ସିନ୍ଦୁର ନାଇଚ-ଯେତେ ଦେଖୁଥିଲେ ଲାଗେ ମୋତେ ନୂଆ ।(୧)

ଆଗରୁ ତୁମେ ତ ହସୁଥିଲ ଖାଲି-ମୁରୁକି ମୁରୁକି ତଳେ କାଟି ଗାର,
ଏବେ ଖାଲି ତମେ ଗପି ଚାଲୁଛ ଯେ-ସେ କଥାରେ ଅଛି ଅମୃତର ଧାର ।
ଆଗରୁ ଯେମିତି ହୃଦୟରେ ଥିଲା- ଏବେ ବି ଜଳୁଛି ସେଇମିତି ନିଆଁ ।(୨)

୦୦୦



# ମନ କହୁଛି ସତେ ନେଇ ଯାଆନ୍ତି ସାଥେ

ମନ କହୁଛି ସତେ ନେଇ ଯାଆନ୍ତି ସାଥେ-
ରଖନ୍ତି ଘରବାଲି କରି, ତୋ' ହାତ ଧରି ।
ତୋ' ରୂପ ଯଉବନ ସଂସାରେ ଅନୁପମ-
କରିଛୁ ମୋର ମନ ଚୋରି, ଲୋ ଚମ୍ପାଗୋରୀ ।(ଘୋଷା)

ଚାଲିରେ ଫୁଟେ ଫୁଲ ଅମୂଲ ତା'ର ମୂଲ,
ଆଣିଛୁ କି ମନ୍ତର କିଣିନେଲୁ ଅନ୍ତର ।
ତୋ' ସାଥେ ଥରେ ପ୍ରେମ କରି, ମୁଁ ଯାଏ ମରି ।(୧)

ରହିଲା ମୋର ରାଣ ରଖିବୁ ଟାଣ ପଣ,
କା' ସାଥେ ଯିବୁନାହିଁ ରହିବୁ ମୋର ହୋଇ ।
ଦେହରେ ପ୍ରାଣ ଦେବୁ ଭରି, ମୋ ସୁନାପରୀ ।(୨)

୦୦୦



# କଥା ଦେଇଛି ମୋ ପ୍ରିୟା

କଥା ଦେଇଛି ମୋ ପ୍ରିୟା ଆଉ ଥରେ ଆସିବାକୁ,
ଏଥର ସେ ଡରିବନି ମୋ ପାଖରେ ବସିବାକୁ ।(ଘୋଷା)

ହେଇଥିବ ଜହ୍ନରାତି, ଗପରେ ରହିବ ମାତି ।
ତା' ପାଶରେ ଥିବି ମୁହିଁ, ଆଉ କେ ଜାଣିବ ନାହିଁ ।
ବାରଣ ନଥିବ ସେଠି ମନ ଖୋଲି ହସିବାକୁ ।(୧)

ଶୁଣି ତା'ର ମନକଥା, ବଢିଲା ମନର ବ୍ୟଥା ।
କେବେ ଆସିବ ସେଦିନ, ବ୍ୟାକୁଳ ହୁଏ ମୋ ମନ ।
ବୁଝିଗଲି ପ୍ରିୟା ଚାହେଁ ନିରୋଳାରେ ମିଶିବାକୁ ।(୨)

୦୦୦



# ଫୁଲରେ ମୋତେ

ଫୁଲରେ ମୋତେ କେ ଗଣୁ ବା ନ ଗଣୁ ମୁହିଁ ଫୁଲ ଗଙ୍ଗଶିଉଳି,
ରାତିରେ ଅନେକ ସପନ ଦେଖେ ମୁଁ ସକାଳକୁ ପଡ଼େ ଝାଉଁଳି ।(ଘୋଷା)

ସବୁ ଫୁଲ ନିଜ ବାସ ଚହଟାନ୍ତି ଦେହରେ ରଙ୍ଗକୁ ବୋଳି,
ଦେବତା ଆଶାରେ ଲତାରେ ଡାଳରେ ଫୁଟି ଖେଳୁଥାନ୍ତି ଦୋଳି ।
ମୋର ମନଯାଇ ବସୁମାତାଠାରେ-
ତା'ର ପାଦେ ଢାଳେ ଅଞ୍ଜଳି ।(୧)

ମରିବାର ସୁଖ ଝଡ଼ିବା ଆନନ୍ଦ ଅନୁଭବ ଅଛି ମୋର,
ପାଇବାର ମୋହ ଦୁର୍ବାର ଲାଳସା କେବେଠୁ ହୋଇଛି ଦୂର ।
ଯିଏ ଯାହା କହୁ କାହାରି କଥାରେ-
ହୋଇନି ହେବିନି ବାଉଳି ।(୨)

୦୦୦



# ଗୋଧୂଳି ବେଳାର କ୍ଳାନ୍ତ

ଗୋଧୂଳି ବେଳାର କ୍ଳାନ୍ତ ପଥିକ ଅସ୍ତଗାମୀ ସୂର୍ଯ୍ୟ ମୁହିଁ,
ବିଦାୟ ବେଳାରେ ରଜନୀ ଗୋ ତୁମେ ମୋତେ ଦେବ ଟିକେ ଚାହିଁ ।(ଘୋଷା)

ସଜାଡ଼ି ଦେଇଛି ତୁମ ଚଲାପଥ ବୁଣି ରଙ୍ଗ ଭରା ଫୁଲ,
ଶୁଖାଇ ଦେଇଛି ଭିଜା ଦୁଃଖ ଯେତେ ଜୀବନକୁ କରି ଗେଲ ।
ତୁମେ ତାକୁ ଟିକେ ସାଇତି ରଖିବ-
ଆଦର ଚାଦର ଦେଇ ।(୧)

କାଲି ପ୍ରଭାତରେ ଲୁଚିବା ଆଗରୁ କହିଦେବ ପଦେକଥା,
ଅନ୍ଧକାର ଘେରା ଜୀବନ କାହାଣୀ ଅକୁହା ବେଦନା ବ୍ୟଥା ।
କେଉଁ ଦରବକୁ ମୋ ସ୍ନେହ ଶରଧା-
ପ୍ରେମ ପାରିଲାନି ଛୁଇଁ ?(୨)

000



# ମୋର ମନ ଥିଲା ତପ୍ତ

ମୋର ମନ ଥିଲା ତପ୍ତ ମରୁଭୂମି ଧୂଷର ବାଲୁକା ଭରା,
ଆକୁଳ ମନରେ ବିକଳ ହୋଇ ମୁଁ ଖୋଜୁଥିଲି ବାରିଧାରା ।(ଘୋଷା)

ତୁମେ ତ ଆସିଲ କୃଷ୍ଣ ବାଦଲ ଆକାଶକୁ ଦେଲ ଚିରି,
ମୋ ବୁକୁରେ ତୁମେ ଢାଳି ଦେଇଗଲ ପ୍ରେମର ଅମୃତ ବାରି ।
ତୁମରି ହାତର ଶୀତଳ ଛୁଆଁରେ ହୋଇଲି ମୁଁ ଆତ୍ମହରା ।(୧)

ଅନ୍ତରେ ଦେଲ ମନ୍ତର ଭରି ମିଠାକଥା କହି କାନେ,
ମୋ ମନର କଥା ମୋ ତନୁର ବ୍ୟଥା ତୁମେ ହିଁ ବୁଝିଲ ଜଣେ ।
ଆଜି ତୁମ ପାଇଁ କୁସୁମ ବରଷେ ମୋ ମନ ବଗିଚା ସାରା ।(୨)

୦୦୦



# ଉଡ଼ାପକ୍ଷୀ ମଇନା

ଉଡ଼ାପକ୍ଷୀ ମଇନା ମୁଁ ଆକାଶ ମୋ ଘର,
ତୁମ ସୁନା ପଞ୍ଜୁରିକୁ ମୋତେ ଭାରି ଡର ।(ଘୋଷା)

ଶଙ୍ଖା ସିନ୍ଦୁରରେ ମୋତେ ବାନ୍ଧି ନିଅନାହିଁ,
ସଂସାର ବନ୍ଧନ ମୋତେ ଭଲ ଲାଗେନାହିଁ ।
ପ୍ରେମ ପୀୟୂଷ ମୁଁ ଦେବି ଯେତେ ପିଇପାର ।(୧)

ଆସ ଆମେ ବସିଯିବା ଘଡ଼ିଏ ଡାଳରେ,
ମନଭରି ପହଁରିବା ସାଗର ଜଳରେ ।
ଉଡ଼ିଗଲେ ପରିଚୟ ନଥିବ କାହାର ।(୨)

ଜୀବନଗୀତର ସୁରେ ମତୁଆଲା ହୋଇ,
ବହୁଦୂରେ ଉଡ଼ିଯିବା ଆକାଶକୁ ଛୁଇଁ ।
ମିଳନ ପରେ ବିରହ ନଥିବ ଆମର ।(୩)

୦୦୦



# ଶତ ଆଘାତରେ ଆହତ

ଶତ ଆଘାତରେ ଆହତ ହୋଇ ମୁଁ ଆସିଛି ତୁମରି ପାଶେ,
ପଣତ ଉହାଡ଼େ ବାନ୍ଧିବି ନୀଡ଼ଟି ଜାଗା ପାଇବାର ଆଶେ ।(ଘୋଷା)

ଆଦର ପାଇଲେ ସକଳ ଯାତନା ଭୁଲିଯିବି ସବୁ ଦୁଃଖ,
ତୁମରି ପରଶେ ହଜିଯିବ ମୋର କୋଟିଏ ଯୁଗର ଭୋକ ।
ତୁମ ବିନା ମୋତେ ନିଥର ମରୁ ହିଁ-
ଉଦାସ ଆଖିରେ ଦିଶେ ।(୧)

ଢାଳିଦିଅ ତୁମେ ମମତାର ଜଳ ସେହି ମରୁବାଲି ପରେ,
ତୁମ ପଣତର ଶୀତଳ ସମୀର ବିଞ୍ଚିଦିଅ ଧୀରେ ଧୀରେ ।
ତୁମ ଶରଧାରେ ହସିବ ମୋ ପ୍ରାଣ-
ଜହ୍ନ ଯେମିତି ହସେ ।(୨)

୦୦୦



# ତୁମକୁ ନିଜର କରି ପାରିଲିନି

ତୁମକୁ ନିଜର କରି ପାରିଲିନି ଅନଳର ଶିଖା ତୁମେ,
ତୁମେ ତ ବୁଝନା ପତଙ୍ଗର ମନ ପ୍ରେମପାଇଁ ପାଇଁ ସିଏ ଝୁମେ ।(ଘୋଷା)

ତୁମରି ଆଲୋକ ଜଗାଏ ପୁଲକ ଅବାଟକୁ ଟାଣି ନିଏ,
ଖିଆଲି ମନରେ ତୁମକୁ ଆଦରି ନିଜ ଜୀବନକୁ ଦିଏ ।
ପ୍ରେମ ପ୍ରୀତି ଆଉ ତ୍ୟାଗର ମହତ୍ୱ-
ଅସଲ ପ୍ରେମିକା ଜାଣେ ।(୧)

ତୁମ ରୂପ ସିନା ଆଖି ଝଲସାଏ ହୃଦୟରେ ହଳାହଳ,
ତୁମ ପ୍ରତାରଣା ଅଭିନୟ ହୁଏ ପତଙ୍ଗର ପାଇଁ କାଳ ।
ନଜାଣି ନବୁଝି ତୁମରି ସାନ୍ନିଧ୍ୟ-
ଖୋଜୁଥିଲି ମନେ ମନେ ।(୨)

000



# ମୁହିଁ ଗୀତି କବି

ମୁହିଁ ଗୀତିକବି କେତେ ଭାବି ଭାବି ଶବ୍ଦରେ ଗଢୁଚି ସଂସାର,
କଳ୍ପନା ବିଭୋରେ ବିଶ୍ୱ ଚରାଚର ଶବ୍ଦ ପାଇଁ କରେ ବିହାର ।(ଘୋଷା)

କେତେବେଳେ ହସେ କେତେବେଳେ ରସେ ମତୁଆଲା ହୁଏ ପ୍ରେମରେ,
କେବେ ଜଳିଯାଏ ଲୁହ ସରିଯାଏ ମୋ ଚରିତ୍ର ପଡ଼େ ଭ୍ରମରେ ।
ନାୟକ ନାୟିକା ଏକକ ଭୂମିକା-
ନିଭାଏ ମୁଁ କରି ବିଚାର ।(୧)

ଭାବ ଆଉ ଭାଷା ହତାଶାରେ ଆଶା ମରଣରେ ଖୋଜେ ଜୀବନ,
ବୟସର ଭାର ନାହିଁ ମୋତେ ଡର ଦେଖୁଛି ମୁଁ ସୁଖ ସପନ ।
ପ୍ରକୃତି ମୋ ପ୍ରିୟ ମନ ମାନବୀୟ-
ତୋଳୁଛି ସଂଗୀତ ଝଙ୍କାର ।(୨)

୦୦୦



# ଜୀବନର ମୋର ଗୋଧୂଳି ବେଳା

ଜୀବନର ମୋର ଗୋଧୂଳି ବେଳା ଏ' ବୁଢା ବରଗଛଟିଏ,
ମୋ ଡାଳରେ ଏବେ ଅନେକ ଯନ୍ତ୍ରଣା ସବୁ କିନ୍ତୁ ସହିନିଏ ।(ଘୋଷା)

ତଥାପି ବସନ୍ତ ମୋ ଦେହକୁ ଛୁଏଁ-
ବରଷାରେ ସିକ୍ତ ହୁଏ,
ପତର କଅଁଳେ କିଛି ଫଳ ଫଳେ-
ପଥିକକୁ ଛାଇ ଦିଏ ।
ପ୍ରଭାତେ ପ୍ରଦୋଷେ ପକ୍ଷୀ କୋଳାହଳ- କୋଇଲି ବି ଗୀତ ଗାଏ ।(୧)

ପ୍ରେମିକା ପ୍ରେମିକ ଆସନ୍ତି ଅନେକ-
ମୋର ଓହଳକୁ ଧରି,
ଭାବ ଦିଆନିଆ କେତେ ମିଠାଛୁଆଁ-
ନିଅନ୍ତି ଆନନ୍ଦ ଭରି ।
ସଭିଙ୍କ ସୁଖକୁ ନିଜ ସୁଖ ମଣି-ମନଭରି ଦେଖୁଥାଏ ।(୨)

ooo



# କି ହେବ ମୋହର ସୁନାର କଙ୍କଣ

କି ହେବ ମୋହର ସୁନାର କଙ୍କଣ-
ବନାରସୀ ପାଟଶାଢ଼ି,
ଦିଅ ମୋ ମଥାରେ ବିନ୍ଦୁଏ ସିନ୍ଦୂର-
ହାତକୁ ଦି' ପଟ ଚୂଡ଼ି ।(ଘୋଷା)

ରାଜମହଲଠୁଁ ତୁମରି ହୃଦୟ ଆହୁରି ସୁନ୍ଦର ଜାଗା,
ସେହି ହେବ ମୋର ତୀର୍ଥ ତ୍ରିବେଣୀ ପବିତ୍ର ଚନ୍ଦ୍ରଭାଗା ।
ରାଣୀହେବା ମୋର ଅଭିଳାଷ ନାହିଁ-
ଲୋଡ଼ାନାହିଁ କୋଠାବାଡ଼ି ।(୧)

ମୋ ସୁନା ସଂସାର ହସିବ ସେଇଠି ତୁମରି ହାତ ପରଶେ,
ତୁମପାଇଁ ମୋର ମନ ଆକାଶରେ ପ୍ରୀତି ବରଷା ବରଷେ ।
ଶୁଣାଇବି ବୋଲି ଜୀବନ ସଂଗୀତ-
ରହିଛି ସପନେ ବୁଡ଼ି ।(୨)

୦୦୦



# ହଜିବାକୁ ହେଲେ ଜୀବନ ସାରା

ହଜିବାକୁ ହେଲେ ଜୀବନ ସାରା ମୁଁ ହଜିବି ତୁମ ପ୍ରେମରେ,
ଖୋଜିବାକୁ ହେଲେ ଖୋଜିବି ତୁମଠି ଅଛି କି ନାହିଁ ମନରେ ।(ଘୋଷା)

ମରିବାକୁ ହେଲେ ଜୀବନ ଦେବାକୁ-
ଆଗକୁ ଆସିବି ମୁହିଁ,
ଝରିବାକୁ ହେଲେ ଲୁହ ଝରାଇବି-
ତୁମ ସୁଖ ଦୁଃଖ ପାଇଁ ।
ହାରିବାକୁ ହେଲେ ହରାଇ ଦେବି ମୁଁ-
ଯାହା ଅଛି ମୋ କତିରେ ।(୧)

ଭୁଲିବାକୁ ହେଲେ ଭୁଲିବି ନିଜକୁ-
ତୁମକଥା ଭାବିଭାବି,
ଚାଲିବାକୁ ହେଲେ ତୁମର ପାଦରେ-
ଆଜୀବନ ଚାଲୁଥିବି ।
ହସିବାକୁ ହେଲେ ଖୋଲା ମନନେଇ-
ହସିବି ତୁମ ସାଥୀରେ ।(୨)

୦୦୦



# ଗୋଲାପ ଫୁଲରୁ ରଙ୍ଗ

ଗୋଲାପ ଫୁଲରୁ ରଙ୍ଗ ନେଇଥିଲି-
ମଲ୍ଲୀଫୁଲଠାରୁ ବାସ,
ଜଈଁଫୁଲ ପରି ପ୍ରେମ ଚାହିଁଥିଲି-
ଶେଷରେ ହେଲି ନିରାଶ ।(ଘୋଷା)

କୋଇଲିର କଣ୍ଠେ ଗାଇଲି ମୁଁ ଗୀତ କିଣିବାକୁ ତାଙ୍କ ମନ,
ମୟୂରଠାରୁ ମୁଁ ନାଚ ଶିଖି ମିଛେ ହଟହଟା ହେଲି ଜାଣ ।
ଏତେ ଆଡ଼ମ୍ବର ଯାହା ପାଇଁ ମୋର-
ସିଏ ଦେଲେ ଭରି ବିଷ ।(୧)

ବାଟ ଚାହିଁ ଚାହିଁ ଆସିଲେନି ସିଏ ମିଛ ପ୍ରତିଶ୍ରୁତି ଦେଇ,
ଭସା ବାଦଲ ସେ ଉଡ଼ି ଚାଲିଗଲେ ନିଶ୍ୱାସକୁ ସାଥେ ନେଇ ।
ଗଙ୍ଗଶିଉଳିର ଜୀବନ ନେଇ ମୁଁ-
ଦେଖୁଛି ଶୂନ୍ୟ ଆକାଶ ।(୨)

୦୦୦



# ତୁମରି ମନର ପାନ୍ଥଶାଳା

ତୁମରି ମନର ପାନ୍ଥଶାଳାରେ ଯେଉଁ ଜାଗାଟିଏ ଅଛି,
ଘଡ଼ିଏ ପାଇଁ ମୁଁ ରହିବି ସେଇଠି ଆଉ ଚାହେଁନାହିଁ କିଛି ।(ଘୋଷା)

ଆଙ୍କିଦେବି ଛବି ରଙ୍ଗ ଭରିଦେବି ତୁମରି ପାନ୍ଥଶାଳାକୁ,
ଲେଖିଦେବି ମୋର ନାଆଁକୁ କାନ୍ଥରେ ରହିବ ଯୁଗ ଯୁଗକୁ ।
ଫୁଲ ଫୁଟାଇବି ବାସ ଚହଟାଇ-
ସଉରଭ ବିଞ୍ଚି ବିଞ୍ଚି ।(୧)

ସପନରେ ତୁମେ ହୋଇବ ବିଭୋର ତୋଳିବ ସରଗ ଫୁଲ,
ଜୀବନ ସଙ୍ଗୀତ ସୁଆଦ ଚାଖିବ ମୂଲ ତା' ଅମୂଲ ମୂଲ ।
ବିଦାୟ ବେଳାରେ ମିଠା ଚୁମ୍ବନରେ-
ଉପହାର ଦେବି ବାଛି ।(୨)

୦୦୦



# ମୋର ମନ ଖୋଜୁଥିଲା

ପୁରୁଷ- ମୋର ମନ ଖୋଜୁଥିଲା କେବେଠୁ ତୁମକୁ,
ନାରୀ- କିଏ ପୁଣି ଖୋଜି ଆଣି ଯୋଡ଼ିଲା ଆମକୁ ?(ଘୋଷା)

ପୁରୁଷ- ଆଜି ମୋର ମନବନେ ଅନେକ ଫଗୁଣ,
ଫଗୁଣର ଫୁଲ ସଙ୍ଗେ ଚଇତି ପବନ ।
ନାରୀ- ସେ ପବନ ବାସଦେଇ କିଣିଲା ମନକୁ । (୧)

ପୁରୁଷ- ଡରଲାଗେ କେବେ ଯଦି ଆସିଯିବ ଝଡ଼ି,
ମୋର ପ୍ରୀତି ଉପବନ ପଡ଼ିବ ଉଜୁଡ଼ି ।
କଥାଦିଅ ପ୍ରିୟା ମନ ଦେବନି କାହାକୁ ।(୨)

ନାରୀ- ଆସୁ ଯେତେ ବଢି ଝଡ଼ ଡରିବାନି ଆମେ,
ପୁରୁଷ- ବିପଦ ଆପଦେ ପାଶେ ରହିଲେ ତ ତୁମେ ।
ନାରୀ- ଆମ କଥା ନେଇ କିଏ କହୁ ଯେତେ ଯାହାକୁ ।(୩)

୦୦୦



# ମୋ ହାତରେ କିଏ ଧରାଇଲା

ମୋ ହାତରେ କିଏ ଧରାଇଲା ମସୀ-
ହୃଦୟରେ ରଙ୍ଗଭରି,
ସେ ରଙ୍ଗରେ ମୁହିଁ ଦୁନିଆ ଦେଖୁଛି-
ଆକାଶ ପରଦା ଚିରି ।(ଘୋଷା)

କବିତାରୁ ଝରେ ପ୍ରେମ ପ୍ରୀତିଧାର ଯୁବକର ଉଦ୍ଧାମତା,
ଆନନ୍ଦ ଅନ୍ଧାନେ ଜୀବନକୁ ନେଇ ମାପେ ତା'ର ଗଭୀରତା ।

କବିତା ଜୀବନ କବିତା ମୋ ସୁଖ କବିତାରେ କରେ ଯାତ୍ରା,
କବିତା ମୋ ଧନ କବିତାରେ ଜ୍ଞାନ-ଶବ୍ଦରେ ଦିଏ ମାତ୍ରା ।

କେତେ ଆସୁଥିବେ ପୁଣି ଯାଉଥିବେ ନିଜକୁ ମଣିବେ ବୃଦ୍ଧ,
ବୟସ କବିକୁ ଛୁଇଁ ପାରେନାହିଁ ଜଳିଲେ ହୋଇବ ଶୁଦ୍ଧ ।

ଧବଳ କେଶକୁ ମପା ଯାଏନାହିଁ ବୟସର ମାପକାଠି,
ଚର୍ମ ଲୋଳିତ ରୁକ୍ଷ ବସନ୍ତ ଦମ୍ଭ କରାଏ ଛାତି ।

ଅନ୍ୟର ବୟସ ବଢି ବଢି ଗଲେ ବୃଦ୍ଧ ହେଲି ବୋଲି କହେ,
କବିର ବୟସ ଅଶି ପାରିହେଲେ ତାକୁ ହିଁ ଚବିଶ ଛୁଏଁ ।

୦୦୦



# ପାନ ପତରରେ ଗୁଆ

ପାନ ପତରରେ ଗୁଆ ଥୋଇଲି,
ଅରୁଆ ଚାଉଳ ସିନ୍ଦୁର ଦେଲି ।
ମଥାରେ ତୁମର ହଳଦୀ ଚନ୍ଦନ- ଗୋଳେଇ ଗାଳେଇ ଲଗେଇ ଦେଲି ।
ଶଶୁର ଘରର ନିମନ୍ତ୍ରା ଦେଲି ।(୧)

ଜ୍ୱୋଇଁ କୁଣିଆଁର ପୂନେଇଁ ଖିଆ,
ଯୋଡ଼ ଯୋତା ତେଣେ ହେଇଚି ଥୁଆ ।
ଗୋଡ଼ ଧୋଇବାକୁ ବାରିକ ବାପୁଡ଼ା-କେତେବେଳୁ ଆସି ହେଇଚି ଠିଆ ।(୨)

ବିଡ଼ିଆ ପାନରେ ପଡ଼ିଚି ମିଠା,
ଭାରରେ ଆସିଚି କାକରା ପିଠା ।
ଶଶୁର ଘରର ନିମନ୍ତ୍ରା ସାଙ୍ଗରେ ପେଡ଼ିରେ ରହିଚି ସଜର ଚିଠା ।(୩)

ତେଣେ ଜଗିଚନ୍ତି ତିନିଟା ଶାଳି,
ଡେରି କଲେ ନିଷ୍ଟେ ଦେବେ ସେ ଗାଳି ।
ଦୁଧ ଦହି ଘିଅ ପୋଖରୀର ମାଛ ଖୋଇବେ ଜ୍ୱୋଇଁକୁ ସରୁ ଚକୁଳି ।(୪)

୦୦୦



# ଆଶାର ସଳିତା ଜଳି ସରିଗଲା

ଆଶାର ସଳିତା ଜଳି ସରିଗଲା ଆଲୋକ ପାଇଲି ନାହିଁ,
ମନ ବଗିଚାରେ ଚାରା ରୋପିଥିଲି ଫୁଲ ବି ଫୁଟିଲା ନାହିଁ ।(ଘୋଷା)

ସଳିତାର ନୁହେଁ ଫୁଲ ଦୋଷ ନୁହେଁ ସବୁ ତ ନିଜର ଦୋଷ,
ଜୀବନ ସଙ୍ଗୀତ ଗାଇ ଗାଇ ମୋର ସବୁ ଗୀତ ହେଲା ଶେଷ ।
ଜୀବନ ନଉକା ବାହି ବାହି ଏବେ ଥକି ପଡ଼ିଲିଣି ମୁହିଁ ।(୧)

ମୁଁ ଏବେ ସାଜିଛି ତହକ ବାଲିରେ ପୋତା ଏକ ମରୁଭୂମୀ,
ଭିଜାଇ ଦେବାକୁ ଛୁଇଁନାହିଁ ମୋତେ ମମତାର ମଉସୁମି ।
ହୃଦୟ ଯାତନା ମରମ ବେଦନା ଆଉ ପାରେନାହିଁ କହି ।(୨)

୦୦୦



# କାମନାର ଯେତେଫୁଲ ଫୁଟିଅଛି ମନରେ

କାମନାର ଯେତେଫୁଲ ଫୁଟିଅଛି ମନରେ,
ତୋଳି ଆଣ ତାକୁ ଘର ବସେଇବା ଜହ୍ନରେ ।(ଘୋଷା)

ଇନ୍ଦ୍ରଧନୁ ପାଲିଙ୍କିରେ ଆମେ ଦୁହେଁ ବସିବା,
ନୂଆଭାବ ଭାଷାନେଇ ବାଦଲରେ ଭାସିବା ।
ମଧୁରାତି ହେବ ଆମ ପାରିଜାତ ବନରେ ।(୧)

ନିରୋଳାରେ ଥିଲେ ଆମେ କେହି ଯଦି ଆସିବ,
ଆମ ମିଳନ ବେଳାରେ ବାଧାଦେଇ ବସିବ ।
ଇସାରାରେ ଲୁଚିଯିବି ତୁମ ହୃଦ କୋଣରେ ।(୨)
୦୦୦



# ମୋର ମନ ଥିଲା ତପ୍ତ ମରୁଭୂମି

ମୋର ମନ ଥିଲା ତପ୍ତ ମରୁଭୂମି-
ଧୂଷର ବାଲୁକା ଭରା,
ଆକୁଳ ମନରେ ବିକଳ ହୋଇ ମୁଁ-
ଖୋଜୁଥିଲି ବାରିଧାରା ।(ଘୋଷା)

ତୁମେ ତ ଆସିଲ କୃଷ୍ଣ ବାଦଲ-
ଆକାଶକୁ ଦେଲ ଘିରି,
ମୋ ବୁକୁରେ ତୁମେ ଢାଳି ଦେଇଗଲ-
ପ୍ରେମର ଅମୃତ ବାରି ।
ତୁମରି ହାତର ଶୀତଳ ଛୁଆଁରେ-
ହୋଇଗଲି ଆତ୍ମହରା ।(୧)

ଅନ୍ତରେ ଦେଲ ମନ୍ତର ଭରି-
ମିଠାକଥା କହିକାନେ,
ମୋ ମନର କଥା ମୋ ତନୁର ବ୍ୟଥା-
ତୁମେ ହିଁ ବୁଝିଲ ଜଣେ ।
ଆଜି  ତୁମପାଇଁ କୁସୁମର ସଭା-
ମୋ ମନ ବଗିଚା ସାରା ।(୨)

୦୦୦



# ଚିଠିରେ ଲେଖିଲ ଚିରିଦେବ ପଢି

ଚିଠିରେ ଲେଖିଲ ଚିରିଦେବ ପଢି-
ଆଉ କେବେ ଚିଠି ଲେଖିବନି,
ଏଇ ଧାଡ଼ିକରେ ଏତେଦିନ ଭାବ-
ସହଜେ ଛିଡ଼େଇ ପାରିବନି ।(ଘୋଷା)

ଖତେଇ ହେଲେ କି କୋଇଲିର ସ୍ବର-
ତାଳରୁ ବେତାଳ ହେଇଯିବ?
ବତେଇ ଦେଲେ କି କାଉ ଆସି କେବେ-
କୋଇଲିର ଗୀତ ଗାଇଦେବ?
ସନ୍ଦେହ କୁହୁଡ଼ି ଘେରିଛି ତୁମକୁ-
ମୋ ଦୋଷକୁ ପ୍ରିୟା ଧରିବନି ।(୧)

କଳାମେଘ ଦେଖି ମଶାରୀ ବାନ୍ଧିଲେ-
ଝଡ଼ି ବରଷା କି ଅଟକିବ ?
ମନରୁ କଥାକୁ ଖୋଲି ନ କହିଲେ-
ମିଛରୁ ସତ କି ଝଟକିବ?
ତୁମ ହାତଛୁଆଁ ଚିଠି ଚିରିବାକୁ-
କୁହ ମୋର ହାତ ଥରିବନି ?(୨)

୦୦୦



## ଏଇ ଛାତି ତଳେ କେବେ ନିଆଁ ଜଳେ

ଏଇ ଛାତି ତଳେ କେବେ ନିଆଁ ଜଳେ-କେବେ ଗଙ୍ଗା ଯାଏ ବହି,
ସେଇ ନିଆଁ ପୋଡ଼ି ଦିଏ ହୃଦୟକୁ-ଗଙ୍ଗା ଯାଏ ସୁଧା ଦେଇ ।(ଘୋଷା)

ଏଇ ହାତଛୁଆଁ କୋମଳ ପରଶ-
ଅମୃତକୁ ଯାଏ ବଳି,
କେବେ ପୁଣି ସେହି ହାତ ତଣ୍ଟି ଚିପେ-
ଫୁଲକୁ ପକାଏ ଦଳି ।
ସେଇ ହାତଗଢା ସୁନ୍ଦର ଦରବ-କୋଟି ମନଯାଏ ଛୁଇଁ ।(୧)

ଏଇ ମନ ଯଦି ମାନିଯାଏ ସିଏ-
ଦୁନିଆର ଦୁଃଖ ନାଶେ,
ସିଏ ଅମାନିଆ ହେଲେ ପାପଛୁଆଁ-
ବିପରୀତ ବୁଦ୍ଧି ଦିଶେ ।
ତୁମ ଛାତି ହାତ ମନ ମିଶିଗଲେ- ଦେହ ହେବ ପ୍ରୀତି ନଇ ।(୨)

000



# ଆଲୋକ ତୁମକୁ କୋଟି ନମସ୍କାର

ଆଲୋକ ତୁମକୁ କୋଟି ନମସ୍କାର-
ତୁମଠୁ ଅନ୍ଧାର ଭଲ,
ସୁଖଠାରୁ ଭଲ ଦୁଃଖର ଯାତନା-
ସିଏ ମୋତେ କରେ ଗେଲ ।(ଘୋଷା)

ଅନ୍ଧାରରୁ ସିନା ସୃଷ୍ଟି ସର୍ଜନା ସେ ସୃଷ୍ଟିକୁ ତୁମେ ପାଳ,
ଦୁଃଖ ପୁଣି ଆଣେ ସୁଖର ସନ୍ଧାନ ଯାତନା ସୃଷ୍ଟିର ମୂଳ ।
ତୁମେ ପିତା ହେଲେ ଅନ୍ଧାର ମୋ ମାତା ଆଗ ପଛହେଇ ଚାଲ ।(୧)

ତୁମପାଇଁ ସିନାପାଏ ଦାନାକନା ଅନ୍ଧାର ଦିଏ ବିଶ୍ରାମ,
ତୁମେ ଚାଲିଗଲେ ଆଉଁସି ଦିଏ ମା ଦେଖାଇ ସୁଖସପନ ।
ପୋଛି ତା' କାନୀରେ କୋଳରେ ଶୁଆଇ ଭରିଦିଏ ନୂଆବଳ ।(୨)

ଦୁଃଖ ଆସି ମୋତେ ସଚେତନ କରେ ଆଖିରୁ ଲୁହ ଗଡ଼େଇ,
ଶକ୍ତି ଭକ୍ତି ଶାନ୍ତି ପାଇବାର ପଥେ ଆଗକୁ ନିଏ କଢେଇ ।
ସେ ତୁଚ୍ଛା ସୁଖକୁ ଦୂରରୁ ଜୁହାର ଅଲୋଡ଼ା ପଳାଶଫୁଲ ।(୩)

୦୦୦



## ତୁମେ ତ କିଛି କହିନା କେବେ

ପ୍ରେମିକ- ତୁମେ ତ କିଛି କହିନା କେବେ- ତୁମେ ତ ମୋତେ ଛୁଇଁନା,
ତୁମକୁ ଏତେ ଭଲ ପାଇଲି-କାହିଁକି ଖୋଲି କୁହନା ।(ଘୋଷା)

ପ୍ରେମିକା- ଫୁଲ କି କେବେ ଗାଇଛି ଗୀତ-ଡାକିଛି ମହୁମାଛିକୁ,
ବାସରେ ତା'ର ହୁଏ ପାଗଳ-ଦେଖି ଫୁଲର ରୂପକୁ ।
ପ୍ରେମିକ- ତୁମେ ହସିଲେ ଝରୁଛି ମହୁ- ପିଇବି ଟିକେ ଦିଅନା ।(୧)

ପ୍ରେମିକା- ଫୁଲ ରସିଆ ଭ୍ରମର ତୁମେ ମୁହିଁ ଗୋଲାପ ବଗିଚା,
ତୁମରି ପାଇଁ ବିଛାଇ ଦେଲି ପ୍ରୀତିର ଫୁଲ ଗାଲିଚା ।
ପ୍ରେମିକ- ସେହି ଗାଲିଚା ପାଖକୁ ମୋତେ ହାତ ଧରିକି ନିଅନା ।(୨)

୦୦୦



# ତୁମରି ପାଖକୁ ଆସିଛି ହେ ପ୍ରିୟ

ତୁମରି ପାଖକୁ ଆସିଛି ହେ ପ୍ରିୟ-
ଅନେକ କଷଣ ସହି,
ସକଳ କଷଣ ଦୂର ହେଇଯିବ-
ତୁମରି ପରଶ ପାଇ ।(ଘୋଷା)

ତୁମ ମିଠାକଥା ମିଠା ମିଠାଛୁଆଁ ମୋତେ କରିଛି ବିଭୋର,
ଅଭୁଲା ରହିବ ତୁମ ମିଠା ସ୍ମୃତି ତୁମରି ମିଠା ଆଦର ।
ତୁମ ମନ ପ୍ରାଣେ ଦେବି ମୁଁ ପୁଲକ-
ମୋ ହୃଦୟ ବିକି ଦେଇ ।(୧)

ଜନମେ ଜନମେ ତୁମକୁ ପାଇବି ହେଲେ ହେବି ଫୁଲଟିଏ,
ଘଡ଼ିଏ ହେଲେ ବି ତୁମେ ଆସୁଥିବ ହୋଇ ମହୁମାଛିଟିଏ ।
ଆଜି ମୁଁ ଆସିଛି ଗଲାବେଳେ ଯିବି-
କିଛି ଦେଇ କିଛି ନେଇ ।(୨)

୦୦୦



# କବିତା ତୁମେ ତ ମୋ ପ୍ରାଣର କୋହ

କବିତା ତୁମେ ତ ମୋ ପ୍ରାଣର କୋହ-
ପ୍ରଣୟର ସ୍ବରଲିପି,
କେତେବେଳେ ଆସ ମୋ ହୃଦୟେ ବସ-
କେବେ ଚାଲିଯାଅ ଛୁପି ।(ଘୋଷା)

ତୁମରି ପାଇଁ ମୋ ବରଫ ଛାତିରେ-
ଭରିଥାଏ ସିନା ତାତି,
ସ୍ବପ୍ନର ବଣିକ କବିତା ପ୍ରେମିକ-
ଲୋଡ଼େନାହିଁ ହୀରା ମୋତି ।
ତୁମରି ବିରହେ ଏ' ଦରଦୀ ପ୍ରାଣ-
ବିଳାପେ ଲୁହକୁ ଚାପି ।(୧)

ତୁମେଥିଲେ ପାଶେ ନୂଆଭାବ ଆସେ-
ମନରେ ପୁଲକ ଜାଗେ,
ଆକାଶର ମେଘ ଭିଜାଏ ମୋ ମନ-
ବରଷି ମହ୍ଲାର ରାଗେ ।
ବଡ଼ ଅଭିମାନୀ ତୁମେ ଗୋ ମାନିନୀ-
କଥା କୁହ ମାପି ଚୁପି ।(୨)

000



# କବି ହେ ତୁମରି କଲମରେ ମୋତେ

କବି ହେ ତୁମରି କଲମରେ ମୋତେ-
ରଖିଦିଅ କରି କାଳି,
ତୁମରି ହୃଦୟ ସାଦା କାଗଜରେ-
ସେ କାଳିକୁ ଦିଅ ବୋଳି ।(ଘୋଷା)

ଶବ୍ଦରେ ତୁମର ପ୍ରୀତିର ଝରଣା-
ହୋଇ ବହି ଯାଉଥିବି,
ନେଇ ନୂଆଆଶା ପ୍ରଣୟର ଭାଷା-
ସଙ୍ଗୀତରେ ଗାଇଦେବି ।
କବି ସମାଜରେ ସାହିତ୍ୟ ସଭାରେ-
ଶ୍ରୋତା ମାରୁଥିବେ ତାଳି ।(୧)

ତୁମର ମଙ୍ଗଳ କାମନା କରିବି-
ନିଜେ ପଛେ ଯିବି ସରି,
କବିତା ତୁମର ହୋଇବ ଅମର-
ଝରିଝରି ଯିବିମରି ।
ତୁମ କଲମର ବୋଝଦେବି ଯଦି-
ମୋତେ ଦେବ ତଳେ ଢାଳି ।(୨)

୦୦୦



# ପ୍ରୀତି ବରଷାରେ ବୁଡ ଦେଇ ଦେଇ

ପ୍ରୀତି ବରଷାରେ ବୁଡ ଦେଇଦେଇ ହୋଇ ନଥିଲି ମୁଁ ଓଦା,
ପ୍ରଣୟ ନୂପୁର ପିନ୍ଧି ପାଇଥିଲି କଳଙ୍କର ଅପନିନ୍ଦା ।(ଘୋଷା)

ହସୁଥିଲି ସିନା ଅଳପ ଅଳପ-
ମନେ ଭରିଥିଲା ଭୟ,
ସନ୍ଦେହ କୁହୁଡ଼ି କେବେ ଆସି ପୁଣି-
ଭରି ଦେଇଥିଲା କୋହ ।
କହୁଥିଲି କଥା କେତେ ମାପି ଚୁପି-
ଚାହିଁ ପାରେନାହିଁ ସିଧା ।(୧)

ଆଜି ମୋ ଜୀବନ ପ୍ରୀତି ପାରାବାର-
ଛୁଇଁଦେଲା ବେଳା ଭୂଇଁ,
ତୁମରି ପରଶେ ମୋ ମନ କଦମ୍ବ-
ଫୁଟେ ବାସ ଚହଟାଇ ।
ମୋର ଆଶା ଆଜି ଆକାଶ ଛୁଇଁଛି-
ପ୍ରୀତି ଫାଶେ ହେଲି ବନ୍ଧା ।(୨)

୦୦୦



# ଏଇ ରଙ୍ଗମଞ୍ଚ ପରେ ନାହିଁ ଆମ ପରିଚୟ

ଏଇ ରଙ୍ଗମଞ୍ଚ ପରେ ନାହିଁ ଆମ ପରିଚୟ,
କରିବାକୁ ହେବ ସିନା ନୂଆ ନୂଆ ଅଭିନୟ ।(ଘୋଷା)

ମୁଁ ତୁମକୁ ଚିହ୍ନେନାହିଁ, ତୁମେ ମୋତେ ଚିହ୍ନନାହଁ ।
ତୁମେ ଚାହଁ ମୁଁ ଚାହେଁ, ଚିହ୍ନା ଚିହ୍ନି ହେବାପାଇଁ ।
କିଏ କାଳେ ଦେଖିନେବ ସେଥିପାଇଁ ଲାଗେ ଭୟ ।(୧)

ହୋଇଯିବି ମୁଁ ତୁମର, ତୁମେ ହୋଇଯିବ ମୋର ।
ଦୁନିଆର ଆଉମାନେ ହୋଇଯିବେ ସାତପର ।
ଗାଇ ଜୀବନ ସଙ୍ଗୀତ କରିବା ପ୍ରେମର ଜୟ ।(୨)

000



# ଜଉରେ ମୁଦା ହୋଇଛି ଘର

ଜଉରେ ମୁଦା ହୋଇଛି ଘର- ତା' ନାଆଁ ଯଉବନ,
ସେହି ଘରର ମାଲିକ ଯିଏ-ତାହାରି ନାଆଁ ମନ ।(ଘୋଷା)

ଶ୍ରାବଣ ଆସି ଧୁଏ ତା' ଦେହ-
ଆଷାଢ଼ ଢାଳେ ଜଳ,
ଚଇତ୍ର ଆଣେ ଥଣ୍ଡା ପବନ-
ଫଗୁଣ ବୁଣେ ଫୁଲ ।
ଘର ମାଲିକ ବଡ଼ ଚଞ୍ଚଳ ଘୂରେ ସେ ରାତିଦିନ ।(୧)

ଭାଷାଟି ତା'ର ଭାରି ମଧୁର-
ଚାଲି ଗୁଣ୍ଡୁଣୀ ହାତୀ,
ରୂପଟି ତା'ର ଭାରି ସୁନ୍ଦର-
ଚମକି ଉଠେ ଛାତି ।
ଜାଣିଛି ମୁହିଁ ଘର ମାଲିକ-ଖୋଜିଛି ତୋରା ପ୍ରେମ ।(୨)

୦୦୦



## କାଲିଯାଏ ଆମ ପରିଚୟ ଥିଲା

କାଲିଯାଏ ଆମ ପରିଚୟ ଥିଲା-
ମୁଁ ଜଣେ ପ୍ରେମିକ, ତୁମେ ପ୍ରେମିକା,
ଆଜି ମିଳିଗଲା ନୂଆ ପରିଚୟ-
ମୁଁ ହେଲି ନାୟକ, ତୁମେ ନାୟିକା ।(ଘୋଷା)

ଆମରି ନାମରେ ଅପବାଦ ବାଜା ବାଜୁଥିଲା କେତେ ଢାଉଁ ଢାଉଁ,
ଆଜି ଶୁଭଶଙ୍ଖ ମହୁରୀ ବାଜୁଛି ବଦଳିଲା ଋତୁ ଚାହୁଁ ଚାହୁଁ ।
ମିଳନ ବେଳାରେ ଗାଇଲେ ସଙ୍ଗୀତ-
ମୁଁ ହେଲି ଗାୟକ, ତୁମେ ଗାୟିକା ।(୧)

ତୁମରି ପାଦରେ ଝୁଣ୍ଟିଆ ନଥିଲା ମଥାରେ ନଥିଲା ସିନ୍ଦୁର,
ମୁଣ୍ଡରେ ପଡ଼ିଲା ଲମ୍ବା ଓଢଣିଟା ଦିଶୁଛି ବହୁତ ସୁନ୍ଦର ।
ସଂସାର ସାଗରେ ମୁହିଁ ନାଉରିଆ-
ଆଜିଠାରୁ ହେଲ, ତୁମେ ନଉକା ।(୨)

୦୦୦



# ତୁମ ସ୍ମୃତି ଆଜି ଭରିଦେଲା

ତୁମ ସ୍ମୃତି ଆଜି ଭରିଦେଲା ମୋର-ଆଖିରେ ଆଖିଏ ଲୁହ,
କହିପାରୁନାହିଁ ସହିପାରୁନାହିଁ ଛାତିରେ ଛାତିଏ କୋହ ।(ଘୋଷା)

ମୁଠାଏ ପାଉଁଶ ସ୍ମୃତି ନେଇଗଲି ରଖିବି ଯତନ କରି,
ଆଞ୍ଜୁଳାଏ ଦୁଃଖ ସାଥୀହେଲା ମୋର ଦିନରାତି ହେବି ଝୁରି ।
ତୁମବିନା କିଛି ସୁଖ ବୋଲି ମୋର ରହିଲା କି ଆଉ କୁହ ।(୧)

ଏ ଜୀବନେ ଥରେ ଭଲ ପାଇଥିଲି ମନର ମଣିଷ ଖୋଜି,
ଫଟା କପାଳକୁ ମିଳିଲା ଦରବ ମୋ ଆଗରେ ଗଲାହଜି ।
ଅଫେରା ବାଟରେ ବାଟୋଇ ସାଜି ମୁଁ ଯାଉଛି ବିଦାୟ ଦିଅ ।(୨)

000



# କାଲି ଆସିବ ମୋ ପ୍ରିୟା

କାଲି ଆସିବ ମୋ ପ୍ରିୟା-ଦେଇଛି କଥା,
କହିବ ସେ ନୂଆ କିଛି-ଲାଗିବ ମିଠା ।(ଘୋଷା)

ତାକୁ ଭଲପାଏ ବୋଲି କେମିତି କହିବି ଖୋଲି,
ପ୍ରୀତିରଙ୍ଗ ତା ହୃଦୟେ କେମିତି ଦେବି ମୁଁ ବୋଳି ।
ଆଶଙ୍କା ଉପୁଜେ ପ୍ରେମ ହେବ କି ପିତା (୧)

ମନହୁଏ ଛନଛନ ଆଖିହୁଏ କନକନ,
ମୁଁ ଡାକିବି ତାକୁ ପ୍ରିୟା ସେ କହିବ ପ୍ରିୟତମ ।
ଅଭିମାନ କଲେ ମୋତେ ଲାଗିବ ବ୍ୟଥା ।(୨)

୦୦୦



# ତୁମରି ପ୍ରେମ ପୋଥିରେ ମୋତେ ରଖ

ତୁମରି ପ୍ରେମ ପୋଥିରେ ମୋତେ ରଖ ନାୟିକା କରି,
ଆମରି ପ୍ରେମ କାହାଣୀ ଯେତେ ତହିଁରେ ଦିଅ ଭରି ।(ଘୋଷା)

କେମିତି ତୁମେ ଭଲ ପାଇଲ, କେଉଁଠି ଦେଖିଥିଲ ?
କାହାକୁ ମିଛ କହି ମୋ ସାଥେ, ପ୍ରଥମେ ମିଶିଥିଲ ?
ପ୍ରଥମ ଥର କି ପ୍ରତିଶ୍ରୁତି-
ଦେଲ ମୋ ହାତଧରି ?(୧)

କେମିତି ଲାଗିଥିଲା ତୁମକୁ ମୋର ପ୍ରଥମ ଛୁଆଁ ?
କେତେ ମଧୁର ଲାଗିଲା ପୁଣି ନିଜ ଛାତିର ନିଆଁ ?
କହିଲ ସତ ଯାଅ କେମିତି-ଘର ଲୋକଙ୍କୁ ଡରି ?(୨)

୦୦୦

